# ଶିଶୁ ଗୀତିକା

ସ୍ନେହଲତା ମହାନ୍ତି



ଓଡ଼ିଶା ସାହିତ୍ୟ ଏକାଡେମୀ

# ଶିଶୁଗୀତିକା

ଲେଖିକା :
ଶ୍ରୀମତୀ ସ୍ନେହଲତା ମହାନ୍ତି

ପ୍ରକାଶକ :
ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର - ୭୫୧୦୧୪

ମୁଦ୍ରଣ :
ପଦ୍ମାଳୟା ପ୍ରକାଶନୀ,
ଶଙ୍କରପୁର, କଟକ-୧୨

ପ୍ରଥମ ପ୍ରକାଶ : ୧୯୯୩

ମୂଲ୍ୟ : ଏକତ୍ରିଶ ଟଙ୍କା ମାତ୍ର

# SISHUGITIKA

*Composed by*
**Smt. Snehalata Mohanty**

*Published by*
**Orissa Sahitya Akademi**
Bhubaneswar-751014

*Printed at*
**Padmalaya Prakasani,**
Sankarpur, Cuttack-12

First Edition : 1993

Price : **Rupees Thirty-one only**

# ଅଗ୍ରଲେଖ

ଶ୍ରୀମତୀ ସ୍ନେହଲତା ମହାନ୍ତି ନିଜର ଗୃହ ଜଞ୍ଜାଳ ମଧ୍ୟରେ ସାଧ୍ୟମତେ ସାହିତ୍ୟ-ସାଧନାରେ ବ୍ରତୀ ହୋଇ ଓଡ଼ିଆ ଶିଶୁ ସାହିତ୍ୟକୁ ତାଙ୍କର ମନୋଜ୍ଞ ଅବଦାନରେ ଶ୍ରୀମଣ୍ଡିତ କରିଆସିଛନ୍ତି । ତାଙ୍କର ସରଳ ଲାଳିତ୍ୟମୟ ଶିଶୁ-କବିତାଗୁଡ଼ିକ ପାଠକ-ପାଠିକାଙ୍କର ଅତ୍ୟନ୍ତ ଆଦରଣୀୟ । ଶିଶୁ-ମନଲୋଭି କବିତା ରଚନାରେ ତାଙ୍କର ଐକାନ୍ତିକ ନିଷ୍ଠା ଅନସ୍ୱୀକାର୍ଯ୍ୟ ।

ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ଲେଖିକାଙ୍କର ଶିଶୁ-କବିତା ସଙ୍କଳନ ପ୍ରକାଶନ ଅବସରରେ ମୁଁ ତାଙ୍କୁ ମୋ'ର ଆନ୍ତରିକ ଅଭିନନ୍ଦନ ଜଣାଉଛି । ଏହି ସଂକଳନଟି ଶିଶୁ-କିଶୋର ପାଠକ-ପାଠିକାଙ୍କ ଦ୍ୱାରା ଆଦୃତ ହେବ ବୋଲି ଆଶା ପୋଷଣ କରୁଛି ।

**ମନୋରମା ମହାପାତ୍ର**
ସଭାପତି
ଓଡ଼ିଶା ସାହିତ୍ୟ ଏକାଡେମୀ

# ଭୂମିକା

ପଲ୍ଲୀ-ପ୍ରକୃତିର ବର୍ଣ୍ଣାଢ୍ୟ ବୈଭବରେ ବିମଣ୍ଡିତ ପଲ୍ଲୀଗୀତି-ସମ୍ଭାର ମଧ୍ୟରୁ ଶିଶୁ-ସଂଗୀତ ଏକ ଅନବଦ୍ୟ ସ୍ୱତଃସ୍ଫୂର୍ତ୍ତ ସହଜାତ ସୃଷ୍ଟି-ସଂପଦ । ଯୁଗେ ଯୁଗେ ଏହା ଲୋକ-ସ୍ମୃତିରେ ଉଜ୍ଜୀବିତ ରହି ରାଜ୍ୟର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ କୋଣେ ଅନୁକୋଣେ ପ୍ରସାରିତ ହୋଇ ଅଗଣିତ ଶିଶୁପ୍ରାଣରେ ହାସ-ଉଲ୍ଲାସର ଫଲ୍‌ଗୁଧାରା ପ୍ରବାହିତ କରିଆସୁଅଛି । ଶିଶୁଗୀତିକା ବା ନାନାବାୟାଗୀତଗୁଡ଼ିକ ଶିଶୁର ଅତି ଆଦରଣୀୟ; ଏହାର ଧର୍ମ ସରଳ, ସୁବୋଧ, ଛନ୍ଦ-ଧ୍ୱନି-ସମନ୍ୱିତ, ସମ୍ମୋହନୀ ଶକ୍ତିବିଶିଷ୍ଟ । ହସକୌତୁକଭରା ଶିଶୁ-ମନଲୋଭା ସରଳ, ତରଳ କୋମଳ ଶିଶୁ ମନରେ ଏହି ଗୀତିଗୁଡ଼ିକ ଏକ ସ୍ୱପ୍ନିଳ ପରିବେଶ ସୃଷ୍ଟି କରି ଅଶାନ୍ତ ଶିଶୁକୁ କ୍ଷଣକରେ ସମ୍ମୋହିତ କରିପାରେ । ଏଥିରେ ନିହିତ ଥିବା ଭାବକୁ ଶିଶୁ ଗ୍ରହଣ କରିବାକୁ ଅସମର୍ଥ ହେଲେହେଁ ଏହାର ଧ୍ୱନି-ସଂଗୀତ ଶ୍ରବଣରେ ସେ ହୁଏ ମନ୍ତ୍ରମୁଗ୍ଧ । ଏହି ନାନାବାୟାଗୀତ ମଧ୍ୟରେ ଅଛି ଗେଲ କରିବାଗୀତ, ଝୁଲାଇବାଗୀତ, ଶୁଆଇବାଗୀତ ଖୁଆଇବାଗୀତ, ବୁଲାଇବାଗୀତ, ଖେଳ-କୌତୁକ ଗୀତ ଇତ୍ୟାଦି । ସବୁଥିରେ ସେହି ପ୍ରକୃତିର ଅପୂର୍ବ ସୃଷ୍ଟି, କୋମଳମତି ଶିଶୁମାନଙ୍କର ଚିରପରିଚିତ ବାୟାଚଢ଼େଇ, ଡାମରିକାଉ, ଶୁଆଶାରୀ, ବିଲୁଆନନା, ବେଙ୍ଗୁଲିରାଣୀ, ବିଲେଇନାନୀର ଅବତାରଣା ଯାହା ଶିଶୁମନକୁ ଆହ୍ଲାଦିତ ଓ ଉଲ୍ଲସିତ କରେ । ଏଥିରେ ନିହିତ ହାସ୍ୟରସ, ରଙ୍ଗକୌତୁକରେ ସେ କୁରୁ କୁରୁ ହୋଇ ହସି ଉଠେ । କ୍ରନ୍ଦନରତ ଅଶାନ୍ତ ଶିଶୁକୁ ଶାନ୍ତ କରିବାରେ ଏହି ଶିଶୁ-ମନଛୁଆଁ ନାନାବାୟାଗୀତର ଭୂମିକା ଯେ କେତେ ଗୁରୁତ୍ୱପୂର୍ଣ୍ଣ ତାହା ପ୍ରତ୍ୟେକ ଗୃହିଣୀ ଉଣାଅଧିକେ ନିଶ୍ଚୟ ଉପଲବ୍ଧି କରିଥିବେ । ଓଡ଼ିଆ ସାହିତ୍ୟର ଏକ ଅନବଦ୍ୟ ବିଭବ, ଏହି ଶିଶୁଗୀତିଗୁଡ଼ିକର ଅଧିକ ଅନୁଶୀଳନ, ସଂକଳନ ଓ ସଂଗ୍ରହ ଯେ ଏକାନ୍ତ ଆବଶ୍ୟକ ଏଥିରେ ଦ୍ୱିରୁକ୍ତିର ଅବକାଶ ନାହିଁ ।

ବରିଷ୍ଠା ଶିଶୁ ସାହିତ୍ୟିକା ଶ୍ରୀମତୀ ସ୍ନେହଲତା ମହାନ୍ତିଙ୍କ ଏହି 'ଶିଶୁଗୀତିକା' ପୁସ୍ତକଟି ସ୍ୱରଚିତ ସତସ୍ତରିଗୋଟି ଶିଶୁ-ମନଛୁଆଁ ଗୀତି-କବିତାର ଏକ ମନୋଜ୍ଞ ସଂକଳନ । ପ୍ରକୃତିର ସେହି ପ୍ରିୟ ଜୀବମାନଙ୍କୁ ନେଇ ଏବଂ ସଂଗୀତର ଛନ୍ଦ ପଦଲାଳିତ୍ୟକୁ ଆଶ୍ରୟ କରି ଶିଶୁଗୀତିଗୁଡ଼ିକୁ ସେ ନିଜସ୍ୱ କଳାରେ ମହିମାନ୍ୱିତ କରି ଶିଶୁ ମନଲୋଭା କରି ପାରିଛନ୍ତି । ଗୀତ ଛଳରେ ଉଡ଼ାଜାହାଜ, ବେଲୁନ୍, ଠାକୁର, ମନ୍ଦିର ସଂପର୍କରେ ଅବତାରଣା କରି ଶିଶୁର ମାନସିକ ଦିଗ୍‌ବଳୟକୁ ସଂପ୍ରସାରିତ

କରିବାକୁ ଚେଷ୍ଟା କରିଛନ୍ତି । ଏହି ସଂକଳନର ପ୍ରକାଶନ ଅବକାଶରେ ଶ୍ରୀମତୀ ମହାନ୍ତିଙ୍କୁ ତାଙ୍କର ପ୍ରଚେଷ୍ଟାପାଇଁ ମୁଁ ସାଧୁବାଦ ଜଣାଉଛି । ପୂର୍ବରୁ ଏକାଡେମୀ ପକ୍ଷରୁ ଓଡ଼ିଆ ଶିଶୁ ସାହିତ୍ୟ ସଂକଳନ ଓ ଶିଶୁ ସଂଗୀତ ସଂକଳନ ପ୍ରକାଶିତ ହୋଇ ବିଦଗ୍ଧ ପାଠକଙ୍କ ଦ୍ୱାରା ଆଦୃତ ହୋଇଛି । ଶ୍ରୀମତୀ ମହାନ୍ତିଙ୍କ ରଚିତ ଏକ ଭିନ୍ନ ରୁଚିର ଏହି ଏକକ ସଂକଳନଟି ପାଠକପାଠିକାଙ୍କ ଦ୍ୱାରା ଅନୁରୂପ ଆଦୃତ ଲାଭ କରିବ ବୋଲି ମୋର ଆଶା ଓ ବିଶ୍ୱାସ ।

ଇନ୍ଦୁଭୂଷଣ କର

ସଂପାଦକ

ଓଡ଼ିଶା ସାହିତ୍ୟ ଏକାଡେମୀ

# ନିଜକଥା

ସ୍ୱାଧୀନତା ପରବର୍ତ୍ତୀ କାଳରେ ଶିକ୍ଷାର ବିକାଶପାଇଁ ଆମ ରାଜ୍ୟରେ ଯେଉଁସବୁ ପଦକ୍ଷେପ ନିଆଯାଇଛି ସେଥିରେ ଏପର୍ଯ୍ୟନ୍ତ ପ୍ରାକ୍ ପ୍ରାଥମିକ ଶିକ୍ଷାପ୍ରତି ସମୁଚିତ ଦୃଷ୍ଟି ଦିଆଯାଇନାହିଁ ଅର୍ଥାତ୍ ଏକ ବର୍ଷରୁ ଛଅବର୍ଷ ଶିଶୁମାନଙ୍କପାଇଁ ଆମ ଓଡ଼ିଆ ସାହିତ୍ୟରେ ସଂଗୀତ ଏବଂ ସାହିତ୍ୟର ଅଭାବ ରହିଛି । ଏହା ହେଉଛି କେତେକ ବରିଷ୍ଠ ଶିଶୁ ସାହିତ୍ୟିକଙ୍କର ହିତୋକ୍ତି ।

ଶିଶୁମାନେ ଦେଶ ଏବଂ ଜାତିର ଭବିଷ୍ୟତ । ସେମାନଙ୍କର ଶାରୀରିକ ବିକାଶ ସହ ମାନସିକ ବିକାଶର ଏକାନ୍ତ ପ୍ରୟୋଜନ । ଶାରୀରିକ ବିକାଶ ଲାଗି ସୁଖାଦ୍ୟ ଏବଂ ସ୍ୱାସ୍ଥ୍ୟର ଯତ୍ନ ଯେପରି ଅପରିହାର୍ଯ୍ୟ ମାନସିକ ବିକାଶ ଲାଗି ସେହିପରି ଶିଶୁସାହିତ୍ୟ ଏବଂ ସଂଗୀତର ଉପଯୋଗ ଏକାନ୍ତ ଆବଶ୍ୟକ । ଶିଶୁମାନଙ୍କର ଏହି ସଂଗୀତକୁ ଇଂରାଜୀରେ **Nursery Rhymes** କୁହାଯାଏ । ଏହାକୁ ଶିଶୁମାନେ ମା, ଜେଜେମା, ତଥା ପରିବାରର ଅନ୍ୟମାନଙ୍କଠାରୁ ଶୁଣି କିଛିକିଛି ବୁଝନ୍ତି, ମନେରଖନ୍ତି ଏବଂ କିଛିଟା ପ୍ରଭାବିତ ହୁଅନ୍ତି ମଧ୍ୟ । ଏହି ପରିପ୍ରେକ୍ଷୀରେ ଯୁଗ-ଉପଯୋଗୀ ଶିଶୁ ସାହିତ୍ୟ ସୃଷ୍ଟି କରିବା ଲେଖକ ଲେଖିକାମାନଙ୍କର ପ୍ରଧାନ କର୍ତ୍ତବ୍ୟ ହେବା ଉଚିତ ।

ଏହି ସାହିତ୍ୟ-ସଂଗୀତର ଭାଷା ଓ ଭାବ ସରଳ, ସହଜ ଏବଂ ପରିବେଶ-ଭିତ୍ତିକ ହେବା ବାଞ୍ଛନୀୟ । ଆଜିର ଶିଶୁ ଆଧୁନିକ ଜ୍ଞାନବିଜ୍ଞାନ ଦ୍ୱାରା ପ୍ରଭାବିତ ହେଉଛି । ତାର ଦୃଷ୍ଟି ଏବଂ ଚିନ୍ତାଶକ୍ତି କେବଳ ବାଇଚଢ଼େଇ, ବଗବଗୁଲି, ଧୂଳିଆ ଜହ୍ନା, ମହୁମାଛି, ପ୍ରଜାପତି, ନଈ, ପୋଖରୀ ପାହାଡ଼, ବଣ ଇତ୍ୟାଦିର ବର୍ଣ୍ଣନାରେ ସୀମିତ ହୋଇ ରହିନାହିଁ । ଯଦିଓ ପାରମ୍ପରିକ ଶିଶୁଗୀତରେ ଏସବୁ ରହିଥିଲା, ଏବେ ମଧ୍ୟ ରହିଛି ଓ ଭବିଷ୍ୟତରେ ରହିବ । କିନ୍ତୁ ଏହା ବ୍ୟତୀତ ତା'ର ଦୃଷ୍ଟିର ଏବଂ ଚିନ୍ତାର ସୀମା ମଧ୍ୟକୁ ବହୁ ଆଧୁନିକ ପଦାର୍ଥ ଆସିଗଲାଣି, ଆହୁରି ଆସିଯିବ । ସେ ଆଜି ବାଘ, ବିଲେଇ, କୁକୁର, କଣ୍ଢେଇ ସହିତ ରେଡ଼ିଓ-ଟେଲିଭିଜନ୍, ରେଲଗାଡ଼ି, କାର, ବସ୍, ଉଡ଼ାଜାହାଜ, ପାଣିଜାହାଜ, ରକେଟ୍, ଜେଟ୍ ପ୍ରଭୃତି ଖେଳନା ଧରି ଖେଳୁଛି । ତା'ର ଜିଜ୍ଞାସୁ ମନ ନିଶ୍ଚୟ ଏସବୁ ବିଷୟରେ କିଛି ଜାଣିବାକୁ ଚାହୁଁଥିବ, ଏଥିରେ ଦ୍ୱିମତ ନାହିଁ ।

ତେଣୁ ତା'ପାଇଁ ଯେଉଁ ସାହିତ୍ୟ ଏବଂ ସଙ୍ଗୀତ ରଚନା ହେଉଛି ତା' ମଧ୍ୟରେ ଆଧୁନିକ ଯୁଗର ବ୍ୟବହାର୍ଯ୍ୟ ପଦାର୍ଥର ବର୍ଣ୍ଣନା ରହିବା ଉଚିତ । କିଛି ହାସ୍ୟକୌତୁକ ଖେଳ ବିଷୟ ମଧ୍ୟ ଭିତ୍ତିରୁ ବାଦ୍ ଦିଆଯାଇ ପାରେନା । ଶିଶୁ ସାଧାରଣତଃ ହାସ୍ୟକୌତୁକ ପ୍ରିୟ । ସୁଖଦୁଃଖର ସମସ୍ୟା ବହୁଳ ବୟସଠାରୁ ସେ ଅନେକ ଦୂରରେ ରହିଥାଏ । ଠିକ୍ କଢ଼ଟିଏ ପରି ତା'ର ମନ କୋମଳ ଏବଂ ପବିତ୍ରତାର ପ୍ରତୀକ । ସମସ୍ତ ମାନବିକତା ତା' ମଧ୍ୟରେ ସଞ୍ଚିତ ହୋଇ ରହିଥାଏ—ଯତ୍ନର ସହିତ ତାକୁ ଫୁଟାଇବା ଆମ ପ୍ରତ୍ୟେକଙ୍କର କର୍ତ୍ତବ୍ୟ । ଏଥିପ୍ରତି ସଜାଗ ଦୃଷ୍ଟି ଦେଇ ସାହିତ୍ୟ ଏବଂ ସଙ୍ଗୀତ ସୃଷ୍ଟି କରିବା ସେହି କର୍ତ୍ତବ୍ୟ ମଧ୍ୟରୁ ଅନ୍ୟତମ ।

ଆମର ଅନେକ ପାରମ୍ପରିକ ଶିଶୁସଙ୍ଗୀତ ଥିଲେ ମଧ୍ୟ ଏଇସବୁ ବସ୍ତୁରଦ୍ୱାରା ପ୍ରଭାବିତ ହୋଇ ମୁଁ ଏହି ଶିଶୁସଂଗୀତଗୁଡ଼ିକ ରଚନା କରିଛି । ଓଡ଼ିଶା ସାହିତ୍ୟ ଏକାଡେମୀ ଏହାକୁ ଉପଯୁକ୍ତ ମନେକରି ଏହା'ର ପ୍ରକାଶନ ଦାୟିତ୍ୱ ଗ୍ରହଣ କରିଥିବାରୁ ଆନ୍ତରିକ କୃତଜ୍ଞତା ଜଣାଉଛି ।

ସ୍ନେହଲତା ମହାନ୍ତ

ଆମ କୁନ୍ ମୁନ୍ ସୁନା ଖଣ୍ଡା
କେଜ୍ଞ ଦଣେ ନାହିଁ ତାଆ ଭଣ୍ଡା ।
ବଡ଼ ହେଲେ ସିଏ ପାଠ ପଢ଼ିବ
ଉଠିବ, ବୁଢ଼ିବ ଦେଶ ଗଢ଼ିବ ।
ଜହ୍ନ ରାଇଜରେ ରହିବ ଯାଇ
ସାଙ୍ଗେ ନେଇଯିବ ଭଉଣୀ ଭାଇ ।



ଆମ କୁନିଝିଅ ହସର ଫୁଲ
ହସଟି ତାହାର ଅମୂଲ ମୂଲ
ସେ ହେବ ପୋଲିସ, ସେ ହେବ ନେତା
ସବୁ ଗୁଣେ ହେବ ଜଗତ ଜିତା ।



ଚୂନୁ ମୁନୁ ଖେଳର ବାଡ଼
ଝୁଲ୍ ଝୁଲ୍ ଗଲେ ରଜାଙ୍କ ହାତୀ
ରଜାଙ୍କ ହାତୀର କହୁଡ଼ି ସଜ
ଆଉ ସଜବାଜ କାଲିକି ରଜ
ପହିଲି ରଜରେ ନଡ଼ିଆ ମୁଢ଼ି
ଆଖିରେ ବାଢ଼ିଲେ ଆମର ଖୁଡ଼ି
ପୋଡ଼ପିଠା, ବରା, ଆମ୍ବ, ପଣସ
ସବୁରି ମୁହଁରେ ଫୁଟିଲା ହସ
ମିଠା ପାନ ଖାଇ ନାଲିଆ ପାଟି
ମଉଜରେ ଗାଆଁ ପଡ଼ୁଛି ଫାଟି ।



ଲୁନକୁ କିଏ ମାରିଲା
ଲୁନ ଧରିଥିଲା ଛେନା-ପୋଡପିଠା
ଛଡ଼େଇ କିଏ ଖାଇଲା ?
ଲୁନ କାନ୍ଦେ କଇଁ କଇଁ
ବାପା ଯାଇଚନ୍ତି ଭୁବନେଶ୍ୱରକୁ
ଆଣିଦେବେ କୋସଖଇ ।
ଆହୁରି ଉଖୁଡ଼ା ଗଜା
ଲୁନ ଖାଉଥିବ, ହସି ଦେଉଥିବ
ହସୁଥିବେ ଦେଖି ଅଜା ।



ଅର୍ ମେଁ ଛେଳିରେ ଡାଳ,ପତର ଖାଆ ।
ଆମ ଲୁନର ଘୁଙ୍ଗୁର ଅଛୁ ଗୋଡରେ ତୋର ନାଆ
ଝୁମୁରୁ ଝୁମୁ ନାଚ ନାଚ ରୁ ଗୀତ ଗୋଟିଏ ଗାଆ
ଆମର ଲୁନ ତାଳି ବଜେଇ କହିବ ବାହା ବାହା
ଦେଖିବେ ତା'ର ଭାଇ ଭଉଣୀ ଦେଖିବେ ବାପା, ମାଆ ।
ଲୁନର ଅଜା ଝୁମକ ବୋଲି ଦେବେ ତୋହରି ନାଆଁ



ଲୁଆଁର ପୁନେଇଁ ଜହ୍ନ
ନାଉ ଫୁଲ ପରି ଦାଉ ଦାଉ ଦଶେ,
ସେଇ ଜହ୍ନଠାରେ ମନ ।
ମୋ ଲୁନ ଖେଳିବ ପୁଚି
ଆଉ ଯେତେ ଝିଅ ହଟି ଯାଇ ସବୁ
ପଛକୁ ଆସିବେ ଘୁଞ୍ଚି ।



ତାଳି ତାଳି ମୋର ଧନମାଳୀ
ଧନମାଳୀ ପିଚ କାଳୀଗଳ ।
ପହଡ଼ ଫିଟିଲେ ପହଲେ ଦେଖିବ
ଧନମାଳୀ ମୋର ମାଆକାଳୀ ।
ପିଠେଇ, କଦଳୀ, ଲଡ୍ଡୁ, ଗଜା
କିଣି ଆଣିଚ ସେ ହବ ପୂଜା ।
ଥାଳି ଥାଳି ଭୋଗ ଜଳେ ନେଇ
ଦେଇ ଆସିବ ସେ ସାଇସାଇ ।

ଟିକି ଟିକି ପାଦ ଥକିଯିବ ତା'ର
କଣ୍ଟକ ପଥର ଚାଲି ଚାଲି
ତାଲି ତାଲି ମୋ'ର ଧନମାଲୀ ।



ହାତୀ ଚାଲେ ଝୁଲି ଝୁଲି
ଆମ ପୁଅ ଯିବ ରକେଟରେ ବସି
ଆକାଶ ରାଇଜ ବୁଲି ।
ତାରା ଫୁଲ ସେଠି ଫୁଟେ
ନାଲିଆ ଅଧର ଚୁଣି ଚୁଣି ପୁଣି
ସକାଳୁ ସୂରୁଯ ଉଠେ ।



ଆମ କୁନ୍‌ମୁନ ସୁନାଥାଳିଆ ।
କେହୁ ଦଶେ ନାହିଁ ତାହା ଭଳିଆ ।
ଆମ କୁନ୍‌ମୁନ ବୁଦ୍ଧିର ଖଣି
ପିଲାଙ୍କ ଭିତରେ ମହଡ଼ମଣି
ହସନ୍ତି ତାହାର ମନ୍ତ୍ରି ବନ୍ଧିଆ
ଗୀତ ଗାଏ ସିଏ ସ୍ୱର ବନ୍ଧିଆ ।



ଝୁଲରେ ହାତୀ ଝୁଲ୍, ବାଆପାଣି ଖାଇ ଫୁଲ
ହାତୀ ଝୁଲୁଥାଏ ବଣ ରାଇଜରେ ବରଡ଼ାଳ ଖାଇବାକୁ
କୁନ ଝୁଲୁଥାଏ ମାଆଙ୍କ କୋଳରେ ଲଡ଼ୁଟିଏ ଖାଇବାକୁ ।
ଝୁଲୁ ଝୁଲୁ ହାତୀ ଡ଼ୁଲେଇ ପଡ଼ୁଛ ଧୂଳିରେ ଧୂସର ଦେହ ।
କୁନା ଝୁଲି ଝୁଲି ହାଲିଆ ହେଲଣି ଶେଯରେ ଶୁଆଇ ଦିଅ ।



ଖରା ମାଆ ଖରା ଦେବ, ଜାଡୁଅ ବାଟ ଛୁଟେଇ ଦେବ ।
ବରଷା ଯାଉ ସଖି ।
ଆମର 'ଜରୁ' ଇସ୍କୁଲ ଯିବ ବହି ପିଲଟ ଧରି ।



ଆମ 'କୁନା' କଥା ସବୁଠୁ ମିଠା
ସତେ ଅବା ଲଡ଼ୁ, ଆରିଷା ପିଠା

ହସିଦେଲେ ଯିଏ ମୁକ୍ତା ଝରେ
ଚାଲୁଥିଲେ ଫୁଲ ଫୁଟଇ ତଳେ ।
କାନ୍ଦିଲେ ସେ ହୁଏ ମେଘ ବରଷା
ଖେଳନ୍ତି ତାହାର ବଡ଼ ଭରସା ।
ନାଚୁଥାଏ ଯେବେ ବଜେଇ ତାଳି,
ଗୀତ ଗାଇ କୁନି ଧରଇ ପାଳି
କୁନା ମାମୁଁଘର କଟକ ସହର
କାଠଯୋଡ଼ି ନଈ ପାଖେ ।
ଗୋଲି ପାଣି ଆଣି ବାଢ଼ିଲେ ସେ ନଈ
ଘୁଙ୍ଗୁ ଘୁଁ ଶବଦେ ଡାକେ ।
ଅଡ଼ଡ଼ା ଖସଇ, ଇଡିଶ ଖେଳଇ
ପାଣି ସୁଏ ଢଳ ଢଳ ।
କୁନି ଦେଖୁଥାଏ କୂଳେ ଠିଆ ହୋଇ
ଟିକଏ ନ ଥାଏ ଡ଼ର ।



ବଗୁଲି ବସାରେ ଓନୋଟି ଛୁଆ ।
ଗୋଟିଏ ଖାଏ ଚକମୁଆଁ ।
ଆରଟି ଖାଏ ମାଛ ଭଜା !
ସବାସାନଟିର ଛେନାଗଜା ।
ବଗୁଲି ନାକରେ ସୁନା ଫାଶିଆ ।
ସବୁଦିନେ ବଗ ପର-ବାସିଆ ।



ନାଚ ଚଳ ମୂଷାଛୁଆ ପାଟଗଲା ଭଉଁରି
କୁନା ମାଉଁ ନାଇଛନ୍ତି ସରୁ ସରୁ ପଇଞ୍ଚ
ଥୁବୁ ଥୁବୁ ଆଉ ଚାଁ'ର ନଇଁ ବୁଲୁ ଥାଆନ୍ତି
କୁନାକୁ ବସେଇ କୋଳେ, କେତେ ଗୀତ ଗାଆନ୍ତି ।
ମାମୁଁ ଘର ଗାଆଁ ମୁଣ୍ଡେ କଇଁ ପଦ୍ମ ଗଡ଼ିଆ
ଶହ ଶହ ଫୁଲ ଫୁଟି ଦଶେ ଘର ବାଢ଼ିଆ
ଅଜାଙ୍କର ମଜାଗପ ଖରଭଲ ଲାଗେ ରେ ।
କୁନା ସର୍କସ୍ ଦେଖିଯାଏ ମାମୁଁଙ୍କର ସାଙ୍ଗରେ ।



ଭୂତକୁ ମାରିଲେ ଶାମୁ ।
ପଠେଇ ଦେବ ମୁଁ ମଟର ଗାଡ଼ି ରେ
ଭୂତ ଶାମୁଘରୁ ଆସୁ ।
ଖଇ ଯାଉଥିବେ ଆଣିବା ପାଇଁକ
ପୋଛୁ ଦେବେ ଭୂତ ଲୁହ ।
ଖଇଙ୍କି ଦେଖିଲେ ଝଟକ ଉଠିବ
ଭୂତର ଶୁଖିଲା ମୁଁହ ।

□

ଏ ହାତେ ବନ୍ଧୁକ ସେ ହାତେ ବାଡ଼ି ।
ଖାଇବେଳେ 'ଜିରୁ' ଯାଉଛ ମାଡ଼ି ।
ପୁଣି ତା'କୁ ଦେଖି ଲୁଚଲ ଯାଇ ।
ଖଲୁଆ ଦଉଡ଼ି ଗଲ ପଳାଇ ।
ବାଛୁରୀକୁ ଦେଖି ଟେକଲ ବାଡ଼ି ।
ପଳାଇଲ ସିଏ ଗାଈକୁ ଗୁଡ଼ି ।
ଜେଜେ କହୁଲେ ତୁ ହୋଇଲେ ବଡ଼ ।
ଲଢେଇ କରବୁ ଜିଣିବୁ ଗଡ଼ ।

□

ଆମ ଭୂତଟି ବୋହୂ ଆଣିବ ନାକଆ ପାଟ ପିନ୍ଧି ।
ଜରି ଓଢ଼ଣୀ ମଥାରେ ଦେବ କପାଳେ ଦେବ ବନ୍ଦ ।
ଚନ୍ଦନ ପାଟି-କଜଳ ଗାର
ମାନବ ତା'କୁ ବହୁତ ଭଲ
ପିନ୍ଧବ ପୁଣି କଙ୍କଣ, ଚୂଡ଼ି, ନାକପଥର ମୁଦ ।
ପାଦେ ବାଜେଣୀ ପାହୁଜ, ପଟି
ଗଳାରେ ଥିବ ସୁନାହାରଟି
ବର ସାଙ୍ଗରେ ବଡା ହୋଇବ ଗାଡ଼ିରେ ଜାଇ ଜାଇ ।

□

ପଜେଇ ଦେବରେ ପିଣ୍ଡାତଳକୁ
ଜାହୁ ନେଇଯିବ ମାମୁଁ ଘରକୁ ।
ମାମୁଁଙ୍କ ଦୁଆରେ ଦବସେ ଥୋଇ
ମାଇଁ ଜାଟୁଥିବେ ଖିଲ୍ଲର, ରେଣ୍ଟ ।
ପଗ୍ଭରେ ସିଏ ଏଇଟି କିଏ ?
ମାମୁଁ କହୁବେ ଏ ଭଣଜାଟିଏ ।

କାଶ ବନ ତାକୁ ଘରକୁ ନଅ
କାଳୀଗାଈ କ୍ଷୀର ପିଆଇ ଦଅ ।
ପାଟ ଝୁଲଣାରେ ଦଅ ଝୁଲେଇ
ଖେଳିବାକୁ ଦଅ ସୁନା କୁଲେଇ ।
ସୁନା କୁଲେଇରେ ରୁପାର ଝୁମ୍ପା
ଆମ ଭଉଣୀଟି ଅପଲ୍କ ସ୍ତମ୍ଭା ।
ବଡ଼ହେଲେ ସିଏ ପାଠ ପଢ଼ିବ
କେତେ ଭଲ ଭଲ କାମ କରିବ ।
ଶ୍ୱଶୁର ଘରରେ ରହିବ ଯାଇ
ସାଙ୍ଗେ ନେଇଯିବ ଭଉଣୀଜ୍ୱାଇଁ ।



ଝରୁ ଯାଇଥିଲା ଆଳି ।
ଭାଇ ପାଇଁ ତା'ର ଜାମା ଆଣିଥିଲା
ଭଉଣୀ ପାଇଁକି ମାଳି ।
ମାଳିରେ ପଥର ଝୁମ୍ପା
ଟରମ ଘଡର ଦନ୍ଦରେ ପକେଇ
ପୁଞ୍ଜି ପୋଉଁ ଥିଲା ଖମ୍ବା ।



ମଙ୍କିଟିଏ ପୋଷିବାକୁ ହେଲା ଯିଏ ଗଛ
ସେ ଗଛଟି ଉଠିଥିଲା ମାମୁଁଘର ପଛ ।
ଜାମୁକୋଳି ଫଳ ତହିଁ ଖେଳନ୍ତି ଡୋଳି ।
ଅନା ନୁଆଁଇଲେ ଡାଳ ଆଉ ନେଇଲେ ତୋଳି ।
ଡୋଳି ଭାଇ ଖଣ୍ଟା ।
ଅନା ଆଉ ଖାଇଦେଇ ହେଲେ ହଟ ହଟା ।
ପେଟ ଫାଟି ହୋଇ ତାଙ୍କ ଭଲ ଦଲାମଟା ।



ମୋ ଝରୁ ଦେଖିଛ ମା'ଆକୋଳେ ବସି କୁଆଁର ଯୁନେଇ ଜହ୍ନ
କେଉଁଦିନ ଯିବ ଜହ୍ନ ପାଖକୁ ସେ ଭାବୁଛି ମନକୁ ମନ ।
ସେଠିକୁ ଗଲେ ସେ ସେଇ ଗାଇଜର-ନୂଆ ଜନପଦକୁ ଦେଖି
ସାଥିପିଲାଙ୍କର ପାଖକୁ ଗୋଟିଏ ଚିଠି ସେଠୁ ଦେବ ଲେଖି ।



ମାମୀ ଯାଇଥିଲେ ଧାନ ବିଲକୁ
ଧରି ଆଣିଥିଲେ ଶଙ୍ଖଚିଲକୁ ।
ଶଙ୍ଖଚିଲ କଲା ଗଛରେ ବସା
ଅମଳ ହେଲଣି ତେଲିଆ ଖସା
ତେଲିଆ ଖସାରେ ଗଣେଶ ଲଡୁ
ଜରୁ ଧରିଥିଲେ ସୁନାର ଗଡୁ ।
ସୁନାର ଗଡୁରେ ଗଙ୍ଗାର ପାଣି
ସେ ପାଣିକୁ ପିଏ ମୋ ପୁଅ ଘୁଣି ।



ଆ ଜହ୍ନମାମୁଁ ସରଗ ଶଶୀ
ମୋ ପୁଅ ହାତରେ ପଡ଼ରେ ଖସି ।
ତୋତେ ଝୁରି ସିଏ କାନ୍ଦୁଚି ଖାଲି
ଗୋରା ମୁହଁ ପଡ଼ିଗଲାଣି ନାଲି ।
ତୁ ଆସିଲେ ସିଏ ଖାଇବ ଭାତ
ଦେଖିଯିବ ଦୁହେଁ ଦଶରା ଯାତ ।
ପଢ଼ିବ-ଖେଳିବ-ତୋଳିବ କୋଳି
ନାଚିବ, ଗାଇବ, ଝୁଲିବ ଦୋଳି ।



ଲଟକ ମିଟକ ଚମ୍ ଟକ ଟକ
ଡାଳରେ ଡାକୁଛ କେନ୍ତି,
ପାଚିଲା ଦାଢ଼ିଆ ଆମର ଅଜାଙ୍କ
ବୟସ ହେଲଣି ଅଶୀ ।
ପାକୁଆ ପାଟିରେ ହସିଦେଲେ ସିଏ
ଆମକୁ ମାଡ଼ଇ ହସ
ପିଠିକୁ ଆମର ଆଉଁସି କହନ୍ତି
ଆସ ମୋ ପାଖରେ ବସ ।



'ଜଗୁର' ଜନମ ଦିନରେ ।
ବାପା ଆଣି ଦେବେ ଜାମା, ଜୋତା, ମୋଜା
ଜାଣି ଜଗୁ ବାବୁ ମନରେ ।

ଦାଦା ଆଣିଦେବେ ଉଡ଼ାଜାହାଜ
ସେ ଉପରକୁ ଯିବ ଉଡ଼ି
ମାଆ କିଣିଥିବେ ଝିଲି, ମାଲପୁଆ
ପୁରି ଛାଣିଥିବେ ଖୁଡ଼ି ।
ଅପା ଦେଇଥିବେ ଚନ୍ଦନ ଲଗେଇ
କେତେ କୋଟିକାମ କରି
ନୂଆ ସବୁ ପିନ୍ଧି ଜରୁ ଗେଲୁଥିବ
ଖେଳନା ସବୁକୁ ଧରି ।



ଝୁଟୁରୁ ଭୁଟୁରୁ, ମୁଟୁରୁ ମୁଣ୍ଡି
କାଳୀ କଳେଇର ମନଟି ଖୁସି
ଆଜି ତା' ବାହାଘର ।
ବେଦୀ ଉପରେ ବସିବ ପିଏ ପାଖରେ ତା'ର ବର ।



କେକେ ଉଦକର ବଜାର ଗଲେ
ଆମ ପୁଅ ପାଇଁ ପେଡ଼ା ଆଣିଲେ ।
ଅଙ୍ଗୁର ଆଣିଲେ ଲିଚୁ, କଦଳୀ
ପୁଅ କାନ୍ଦ ମୁହଁ ଗଲା ବଦଳି ।
କେକେଙ୍କୁ ଦେଲା ସେ ଜଳେ ଖାଇଲା
ଗପ ଶୁଣିବାକୁ ବସି ପଡ଼ିଲା ।
ଗପ ଶୁଣୁ ଶୁଣୁ ହୋଇଲା ରାତି
କେକେ କହିଲେ ରେ ଶୁଣ୍ ନାତି ।
ଖାଇ ପିଇ ଖୁଲ ଶୋଇ ପଡ଼ିବା
ସକାଳୁ ଉଠିଲେ ପାଠ ପଢ଼ିବା ।



ଉଡ଼ାଜାହାଜ ଉଡ଼ାଜାହାଜ ତଳକୁ ଆଆ ।
ପୁଅକୁ ମୋର ବସେଇ ନେଇ ଉପରେ ଉଡ଼ି ଯାଆ ।
ଛାଡ଼ିଦେ ତାକୁ ବିଦେଶେ ନେଇ
ମୋ ପୁଅ ପାଠ ପଢ଼ିବ ତହିଁ
ବୁଲିବ କେତେ ଦେଶ ବିଦେଶ
ମନ ଖୁସିରେ ତା'ର
ଫେରି ଆସିଲେ ବୁହାଇ ଦବ ଜିଅ, ମହୁର ଧାର ।



କୁନା ଶାଶୁଙ୍କର ବାଁ ବରଡା
ଘୋଡ଼ା ରଖିଚନ୍ତି ଯୋଡ଼ାକୁ ଯୋଡ଼ା ।
ଗାଈ ରଖିଚନ୍ତି ଶହକୁ ଶହ
ଗୃଷ କରୁଚନ୍ତି ଗହମ ଘଅ ।
ଧାନର ଅମାର ପଡ଼ୁଚି ଫାଟି
ସଇ ଭଲ ଆମ କୁନ ଶାଶୁଟି ।
କୋଳରେ ବସେଇ ଖୁଆଇ ଦଏ
ପିଠିକି ଆଉଁସି ଶୁଆଇ ଦଏ ।
ଅଷ୍ଟ ହୋଇଲେ ଆମର କୁନ
ଗେଲ କର ତାକୁ ଧରଇ ରୁନ ।



ଅଗଣାରେ ଝୁଲେ ଦୋଳି
ଦୋଳି ଖେଳି ପୁଅ ହାଲିଆ ହେଲଣି
ନୋଳକୁ ଆଣରେ ତୋଳି ।
ପୋଛିଦିଅ ତା'ର ଝାଳ
କାଲି ହେବ ପୁଅ ଜନମ ଦିନ ସେ
ପିନ୍ଧିବ ଗଜରା ମାଳି ।



ନଈ ବହିଯାଏ ପୂରୁବ ମୁହାଁଳେ
ମାଟି ବାଲି ନିଏ ତାଡ଼ି
ନଈ କୂଳେ କୂଳେ ଲାଗିଚି ଦେଖଣେ
ବଗ ବଗୁଲିଙ୍କ ଧାଡ଼ି ।
ନଈରେ ଗଲୁଚି ଡଙ୍ଗା
ମୋ ପୁଅ ଡହରେ ଖରା ଧାସ ବାଜି
ମୁହଁ ଦିଶୁଅଛି ରଙ୍ଗା ।



ଢୋଲ ବାଜେ ଢାଉଁ ଢାଉଁ
କୁମାର ଦଣ୍ଡରେ ଜରିଫୁଲ ଜାମା ଦିଶୁଥାଏ ଦାଉ ଦାଉ ।
କୁନି ଦେଖିଯିବ ଯାତ
ବାପା କିଣି ଦେବେ ସୁନାହାର ଆଉ ମାଆ କିଣି ଦେବେ ପାଟ ।
ଭାଇ କିଣି ଦେବେ ଚୂଡ଼ି
ନାଲି ପଥରର ସୁନା ମୁଦିଟିଏ କିଣି ଦେବେ ଦାଦା ଖୁଡ଼ୀ ।
ଆଉ ଦରକାର ଯାହା
ବଣିଆକୁ ଡାକି ବରାଦ କରିବେ ଜେଜେ ଆଉ ଜେଜେମାଆ ।



ନଡ଼ିଆ ଛଡ଼େଇ ପକେଇ ଦେଲିଲେ ବାଉ ଭିତରକୁ କତା
'ଜରୁ' ଯାଉଥିଲା ବରଷା ବେଳେ ଲେ ଧରିଥିଲା ଟିକି'ଛତା ।
ଛତାର ବଙ୍କୁଲି ବାଡ଼ି
ଜରୁ ଯେବେ ମୋର ବ୍ୟବସ୍ଥା କରିବ
କିଣି ଦେବ ନୂଆ ଗାଡ଼ି ।



"କାଠହଣା" ଦେଏ କାଠ ରୁ ହାଣି
ଶେଷେଇ କରିବ ଆମର କୁନି ।
କାଟି, ବାଟି, ସବୁ ରନ୍ଧିବ ସିଏ
ତାଆ ପରି ନାହିଁ ସିଆଣା କିଏ ।
କରିବ ବେସର, ଛଅଣ, ଭଜା
ଭୁନା ସାଙ୍ଗେ ବସି ମାରିବ ମଜା ।
ଜେଜଙ୍କ ପାଖରେ ବସିବ ଯାଇ
କହିବ 'ସେ' ବଡ଼ ପାଠ ପଢ଼ାଇ ।



କାହନାହିଁ ଧନ ଧୂଳିରେ ଗଡ଼ ରୁ ଦେହ ହୋଇଯିବ ମଳି
ନୀଳ କଇଁ ଆଖି ନାଲି ପଡ଼ିଯିବ, ଧାର ଧାର ଲୁହ ଝରି ।
ଭାଙ୍ଗିଯାଇଥିଲେ ଗଢ଼ାଇ ଦେବ ମୁଁ ହଜିଥିଲେ ଦେବ ଖୋଜି
କାଲି ଆମେ ଯିବା ନନ୍ଦନ କାନନ କରିବାକୁ ବଣ ଭୋଜି ।



ଉଠ ଧନ ମୋର ରାତ ପାହିଗଲା ସୂରୁଯ ଆସିଲେ ଉଇଁ
ମାଳ ମାଳ ପକ୍ଷୀ ଉଡ଼ି ଯାଉଚନ୍ତି ଦେଖରେ ଆକା'ଶ ରୁନ୍ଧି ।
ଗୋଟି ଗୋଟି ହୋଇ କାକର ଟୋପାଲେ ପଡ଼ିଅଛି ଘାସ ପରେ
ପାଚେରି ଗୁହଳରେ କାଉଟିଏ ବସି କାଁଆ କାଆ ରାବକରେ ।
କୁନା, ମୀନା, ଲୁସି ଗାଧୋଇ ପାଧୋଇ ଖାଇଲେଣି ଜଳଖିଆ
ତୁ ଯେବେ ଶୋଇଚୁ ସବୁପିଲା ତୋତେ ଡାକବେଟି ଅଳସୁଆ ।
କୁନା'ରେ ମୁଁ ତୋତେ କୋଳରେ ଧରିଚି କୁନକୁ ଶୁଆଇ ଦେଇ
ତୁମେ ଦୁହେଁ ଯାକ ସୁନା ପୁଅ ଝିଅ ତୁମ ପରି କେହି ନାହିଁ ।
କୁନ ହସୁଥିଲେ ମୁକୁତା ଝରଇ ତୁ ହସିଲେ ଝରେ ହୀରା ।
କୁନଟିତ ମୋର ଘରର ପଦ୍ମ ତୁ ଚାନ୍ଦଟିଏ ପରା ।



ଦୁମୁ ଦୁମୁକା

ହିଣ ପତରରେ ଗୋଡ଼ ଝୁମୁକା
ବଜେଇଲେ ଶୁଭେ ଝୁମୁକେ ଝାଇଁ
ଆମ ପୁଅ ଜମା କାନ୍ଦଇ ନାହିଁ ।
ଦାଣ୍ଡେ ଯେବେ ଯାଇ ଖେଳଇ ବାଲି
ଘର ଗୋଟାଯାକ ଲାଗଇ ଖାଲି ।
ନାଚୁଥାଏ ଯେବେ ବଜାଇ ତାଳି
ଲାଗେ ଭଲ ଦଶେ ମୋ ଗଲାମାଳି ।
ହସଟି ତାହାର ବଡ଼ ସୁନ୍ଦର
ଖେଳ ବୁଲ କରେ ଘର ଦୁଆର ।
ଗୁଲୁ ଗୁଲୁ କଥା ମଧୁରେ ଭଜା
ରେକର୍ଡ଼ ତାହାକୁ କରନ୍ତି ଅଜା ।



ହୁଆ ବାଇଆରେ ଯା, ଯା, ଘରକୁ
କୁହୁଡ଼ି କାକର ମାଡ଼ି ଆସୁଚରେ 'ଜରୁ' ଟାଙ୍ଗରା ମୁଣ୍ଡକୁ ।
ବାପା ଆଣିଥିଲେ ନଆ ଟୋପିଟିଏ ଟାଙ୍ଗରା ମୁଣ୍ଡଟି ପାଇଁ
ନେତାଟିଏ ପରି ଦଶେ ଆମ ପୁଅ ଟୋପିଟି ମଥାରେ ଦେଇ ।



ବାଗରେ ମାଳତୀ ଲତା
ଶେଫାଳି ଫେଣ୍ଟି ଫୁର ଉଠିବ ଯେ
ଶୁଣିଦେଲେ 'ଜିତୁ' କଥା ।
ବାଗ ବରଗଡ଼ା ଛୁଇଁ
ଜିତୁ ହସୁଥିଲେ ଫଗୁଣ ସତେ କି
ଜହ୍ନଟି ଆସୁଚ ଛୁଇଁ ।
ବାଗରେ ପୋଖରୀ, କୂଅ
ହାଡ଼ରୁ ମାଉଁସ ଝରି ପଡ଼ଇ ଯେ
ଦେଖିଲେ 'ଜିତୁ' ଲୁହ ।



ଅଗଡ଼, ବଗଡ଼, ଝାଉଁଳ ଝଟା
ମାଡ଼ି ମାଡ଼ି ଯାଏ କଖାରୁ ଲଟା ।
କଖାରୁ ପାଉଁଳ ପାଳର ଶିକା
ଗାଆଁକୁ ଆସିଚ ଖେଳନା ବିକା ।
ଖେଳନାକୁ କିଣି ପଇସା ଫିକା
ତାଙ୍କ ଘର ପୁଅ ନାକ ସୋଡ଼କା ।
ନାକ ପୋଛୁ ପୋଛୁ ହେଲାଣି ଘାଆ
ଡାକତର ଖାନା ସହର ଯାଆ ।
ମଲମ ଟିକିଏ ଲଗେଇ ଆ ଆ
ଭଲ ହୋଇଯିବ ନାକର ଘାଆ ।



ଆଜ୍ଞା ଗଇତା କି ସାରୁ ଗଇତା ଯେ
ଜେଜେମା ବସିବେ ଖାଇ
ମୋ କୁନ ପିନ୍ଧିଲେ ଝୁମ୍‌କ ପାଉଁଜ
ବାଜିବ ଝୁମୁରୁ ଝାଇଁ ।
କୁନ ନାଇଥିବ ସବୁ କଜଳ ଯେ
ଝଟକୁ ଥିବ ତା' ଆଖି
ଚହ୍ଲା ପୁନିଅଁରେ ଭାଇଙ୍କ ହାତରେ
ବାନ୍ଧିଦେବ ସିଏ ରାଖି ।
ମିଠା ଖୋଇଦେବେ ଭାଇ
କହିବେ ମୋ ଗେହ୍ଲା ଭଉଣୀଟି ଭଲ ଆଉଜଣେ କେହି ନାହିଁ ।



ଲିଟୁ ଯାଉଥିଲା ନଈକି ଗାଧୋଇ
ମୁଁ ଚାହିଁଥିଲି ବାଟ
ଆସିବା ବେଳ ତା' ଉଛୁର ହେଲା ଲୋ
ମନ ହେଲା ଛଟ ପଟ ।
ଆଖିରୁ ଝରିଲା ଲୁହ
ଯୁଆଡ଼େ ଚାହିଁଲି ସେଆଡ଼େ ଦିଶିଲା
ମୋ ପୁଅ ସୁନ୍ଦର ମୁହଁ ।



ବାରିରେ କଖାରୁ, ଲାଉ
ନେଉଳ ବକୁଡି ଶେଉଳ ମାଛ ଲୋ
କାଉ କରୁଅଛି ଖାଉ ।
କାଉର ଦେହଟି କଳା
ହରଣ କାଟୁଚି ପାଚିଲା ଧାନ ଲୋ
ଭାଲୁ ବୋହୁନଏ ହଳା ।



ଟଗର ଫୁଲଟି ଦଶଇ ଧଳା
'ଜିରୁ' ପିଲଟଟି କଜଳ କଳା ।
ନାଲି ଖଡ଼ିଧରି ଲେଖୁଚି ସିଏ
ପାଠରେ ତାହାକୁ ପାରିବ କିଏ ? ।
ହଳଦିଆ ପ୍ୟାଣ୍ଟ୍ ନେଳିଆ ଜାମା
କିଣି ଦେଇଛନ୍ତି ତାହାର 'ମାମା' ।
ନେଳି ମୁଣିଟିକୁ ହାତରେ ଧରି
ଦଉଡ଼ି ଯାଏ ସେ ଇସ୍କୁଲ ପଢ଼ି ।
ଶାଗୁଆ ରଙ୍ଗରେ ଆଗୁଆ ହୋଇ
ଚତୁର କରଇ ପୋଟଳ, ପୋଇ ।



ଉଡ଼ିଗଲା ଗେଣ୍ଡାଳିଆ ଝାଡ଼ିଦେଲା ପର
କୁନି ଝିଅଟିର ମୋର ବଳେଇକି ଡର ।
ଦେଖି ଦେଲେ ବଳେଇ
ଉଠେ ସିଏ ଚଳେଇ ।

ଜେଜେମାଆ କୋଳେ ବସି କାନ୍ଦେ ଝିଅ ଗେହ୍ଲେଇ
ଜେଜେ କହନ୍ତି କୁନି ଲୋ ! ଏଡ଼କି ତୁ ଫୁଲେଇ ।
ମିଛଟାକୁ ଏତେ ପାଟି ଦେଉଅଛୁ ମେଲେଇ ।
ବଳେଇ ତୋ କାନ୍ଦଶୁଣି ଗଲାଣିଟି ପଳେଇ
ଦେଖିଲୁ କୋଉଠି ଅଛୁ ବଳେଇ ନାଁ ଫିଲେଇ ।"



ନୂଆଧାନ କେଶ କେଶ
ସୁନା ଝିଅକୁ ମୋ କିଏ ମାରିଲା ଲୋ
ଲୁହ ଧାର ପଡ଼େ ଝରି ।
କୁନି କାନ୍ଦେ କଇଁ କଇଁ
ଯାଆ ବଡ଼ଝିଇ କୁନିକୁ ନେଇ ରେ
ଦେଖେଇ ଆଣିବୁ ନଈ ।
ନଈରେ ବାଳିଆ ମଲା
ଆମ ଘରଟିରେ ଯେତେକ ମଣିଷ
କୁନିଟି ସବୁର ଗେହ୍ଲା ।



ବାଣଗଛେ ବରକୋଳି
ପଚା ଦୋଳିଟିଏ ଲଗେଇ ଦିଅରେ
ମୋ' ଝିଅ ଖେଳିବ ଦୋଳି ।
ଦୋଳି ଡାକେ କଟ କଟ
ମୋ ଝିଅ ମୁଣ୍ଡରେ ଜରି ଓଢ଼ଣୀ ଲୋ
ଦିଶୁଥିବ ଜକ ଜକ ।



ଚକ ଯାଏ ଗଡ଼ ଗଡ଼
ମିଟୁବାବୁ ମୋର ବଡ଼ ହୋଇଗଲେ
ବିଦେଶକୁ ଯିବ ପଢ଼ି ।
ଆସିଲେ ସେ ପଢ଼ି ପାଠ
ସାନଠାରୁ ବଡ଼ ସବୁରି ପାଇଁକି
ଫିଟାଇବ ନୂଆ ବାଟ ।



ଅଗିଣେ ଫୁଟଇ କଇଁ
ରାଗିଲେ, ରୁଷିଲେ ମନେ ରଖିଥାଅ
ଏକା ଏକା ଥିବୁ ରହି ।
କେହି ତୋତେ କୋଳେ ଝୁଲେଇବେ ନାହିଁ
କେହି କଣବେନି କାଣ ।
ଗେଲ କରି କେହି ବୋକ ଦେବେ ନାହିଁ
ଶୁଣିବେ ନାହିଁ ତୋ ଡାକ ।



ପୋଖରୀ ପାଖରେ ଡାହୁକ ବସା ଲେ
ଗହଳ ଅମର ବଣ
ଛେନାଗଜା, ସାକ ବିଲେଇ ଖାଇଲା
ମୋ 'ଜିତୁ' ଖାଇବ କଣ ?
ମୋ 'ଜିତୁ' ଖାଇବ ଭାତ
ମୁହଁ, ହାତ ଧୋଇ
ଝିଅ ସାଙ୍ଗ ହୋଇ
ପଢ଼ିବାକୁ ଯିବ ପାଠ ।



ଧନ ମୋର କାନ୍ଦ ଗଡ଼ି
ଧୂଳି ବାଲି ହୁଅନାଁ
ସରଗର ଚନ୍ଦ ମାଗି
ରୁଷିକରି ଶୁଅ ନାଁ ।
ତଳକୁ ଆସେନାଁ । ଚନ୍ଦ
ବଡ଼ ହେଲେ ଜାଣିବୁ
ତାରା ସବୁ ଫୁଲ ନୁହେଁ
କେମିତି ରୁ ଆଣିବୁ ? ।

ଅବୁଝା ତୁ ହୁଅନାହିଁ
ମୋ କୋଳକୁ ଆ’ରେ
ଧୂଳି, ବାଲି ଝାଡ଼ିଦେବି
ଭାତ ଦେବି ଖାଅରେ ।



ଆମ ପୁଅର ଜନମ ଦିନ
ହବରେ ବଡ଼ ଭୋଜି
ଭୋଜି ପାଇଁକି ରୋହି, ଭାକୁର
ଆଣିବେ ବାପା ଖୋଜି ।
‘କାକରା’ ହବ ହଣ୍ଡାକୁ ହଣ୍ଡା
ଛଣା ହୋଇବ କାକର ମଣ୍ଡା ।
ଛେନା ତରଣ, ବେସର ଶାଗ
ପୋଟଲ ରସା ନିଥିବ ସାଗ ।
ମିଠେଇ, ଖଜା ଯାହାକୁ ଯେତେ
ଯେତେ ଖାଇବ ମିଳିବ ସେତେ ।
ଖିଆ, ପିଆର ଲାଗିବ ଧୂମ୍
କେତେ ରଙ୍ଗର ଜଳିବ ଡୁମ୍ ।
ପୁଅଟି ହୋଇ ଖୁସି
ଖେଳୁଥିବ ସେ ସାଥିରେ ଧରି
ଟିକଲି, ମୀନା, ଲୁସି ।



ନଈରେ ଖେଳୁଛି ସେହ୍ନ
ମୋ ପୁଅ ଖେଳୁଛି
ଖରା ଧାସରେ ଲୋ
ଝାଳ ପଡୁଅଛି ବୋହ୍ନ ।
ନାଆ ଗୁଲେ ଥର ଥର
ପୁଅ ମୁହଁ କଳା ପଡ଼ି ଗଲାଣିଟି
ଖୋଇ ଦିଅ ତାକୁ ଖିସ୍ତ ।



ଆମର ଝିଅଟି ଡଅପୋଇଟିଏ
ଟିକିକେ ସଜେଇ ହୁଏ ।
ଭାଇ ଯେବେ ତାକୁ କାଖ କର ନିଏ
ହସ ଫୁଟେ ତା'ର ମୁହେଁ ।
ଆମର ଝିଅଟି ଡଅପୋଇଟିଏ
ବାପାଙ୍କର ଗଣ୍ଠି ଧନ ।
ଯାହା ସେ ଚାହିଁବ ତାହା ଦେବା ପାଇଁ
ବାପା କରନ୍ତ ପଣ ।
ଆମର ଝିଅଟି ଗେଲବସରି
ସେ ମାଆଙ୍କର ଗଳାମାଳ ।
ଆଖି ଆଢୁଆଳେ ରହିଗଲେ ଟିକେ
ଖୋଜୁ ଥାନ୍ତ ଦାଣ୍ଡ ବାର ।



ଆମର ଗାଆଁର
ବଡ଼ ପୋଖରୀରେ
ଫୁଟେ ନାଲି, ଧଳା, କଇଁ ।
ବଡ଼ ହେଲେ ଲୁନା,
ଫୁଲ ତୋଳି ଦେବ,
ଠାକୁର ପୂଜିବା ପାଇଁ ।
ଜେଜେ ମା କରିଲେ ଠାକୁରଙ୍କ ପୂଜା
ଲୁନା ଦେଖୁଥାଏ ବସି ।
ଭୋଗଯାକ ସବୁ ହାତରେ ଧରିସେ
ଖୁସି ହୋଇ ଦିଏ ହସି ।



ନେଳୀ ଛନ ଛନ
କାଉଁଚ କାଙ୍କୁଡ଼
ପାତିଲେ କାଉଁଚ ମାଳ ।
ଲୁନା-ଲୁନୀ ଦୁହେଁ
ନାଚକରୁଥିଲେ
ଜେଜେ ମାରୁଥିଲେ ତାଳି ।
ଜେଜେ ମା ପାଖରେ ବସି
ପାକୁଆ ପାଟିରେ ପାନ ଖାଉ ଖାଉ
ଗଡ଼ୁଥିଲେ ହସି ହସି ।



ଖେଳ ପଡ଼ିଆରେ ଖେଳ ପଡ଼ିଆ ।
'ଜରୁ' ଭଲପାଏ ନାଲି ନଡ଼ିଆ ।
ଜାଣି ନାହିଁ ସିଏ ଗଛରେ ଚଢ଼ି
ଚଢ଼ୁ ଚଢ଼ୁ କାଲେ ଯିବଟି ପଡ଼ି ।
ଆ'ରେ ଗଛ ତୁ ତଳକୁ ନଇଁ ।
ମୋ 'ଜରୁ'କୁ ଯାଆ ନଡ଼ିଆ ଦେଇ ।
ନଡ଼ିଆ ଖାଇ ସେ ମାତିବ ଖେଳ
ପଢ଼ି ବସିଯିବ ବଢ଼ିଆ ବେଳେ



ତୋଳି ଦେବ ତୋତେ ଢାଙ୍କୁଡ଼ି କରି ।
ଆ'ରେ ମୋ କୋଳେ ଖାଇବୁ ବସି ।
ଅଣ୍ଟ ହୁଅନା ଢାଙ୍ଗ
କ୍ଷିରି ମୁଁ ରଖିଚ ବାନ୍ଧ ।
ଗ୍ରମଚରେ ତତେ ଦେବ ଖୁଆଇ ।
ଝୁଲେଇ ଝୁଲେଇ ଦେବ ଶୁଆଇ ।
ଉଠିଲେ ଖେଳିବୁ ଯାଇ ।
ସାଥି ପିଲା ମେଳେ ଭଲ ପିଲା ହୋଇ
ମାଡ଼, ଗୋଳ ହେବୁ ନାହିଁ ।



" ଭାତ ଡାଲି, ଶାଗ, ଚଟଣି, ଭଜା
ଖାଇବୁ ଆ' ମୋ ଗଭଜ ରଜା ।
ଟିକି ଟିକି ଗୁଣ୍ଡା ଦେଉଚ କର ।
ଖାଇ ଦେଏ ତୋର ହାତରେ ଧରି,
ନହେଲେ ତୋତେ ମୁଁ ଖୁଆଇ ଦେବ,
ଖାଇ ସାରିଲେ ତୁ କାଖକୁ ନେବ ।



'ଜଗୁ' ଯେବେ ଯିବ ମାମୁଁ ଘରକୁ ଲୋ
ମାଇଁ ନେବେ କୋଳ କରି,
କେତେ ପିଠା, ମିଠା, ଖିରି, କାକରା ସେ
ବାଢ଼ି ଦେବେ ଥାଳିଭରି ।
'ଜଗୁନା'' ବସିବ ଖାଇ ।
"ଏଇଟାକୁ ଖାଆ, ସେଇଟାକୁ ଖାଆ କହୁଥିବେ ବସି ଆଇ''



ଶାଳ ପତରର ଠୋଙ୍ଗା ।
ମୋ ପୁଅ ଖାଉନି ଭାତ, ଡାଲି, ମାଛ,
ଦେବ ତା'କୁ ରସ ଗୋଲା ।
ଛେନା ଗଜା, ସରପୁଲି ।

ରଖିଦେବ ଆଣି ତା'ହାର ଆଗରେ
ଖାଇବ ସେ କାନ୍ଦ ଭୁଲି ।
ଅବୁଝା ନୁହେଁ ମୋ ପୁଅ,
ମିଠା, ପିଠା, ଫଳ, ଖାଇବାରେ ଆଉ
କେହି ତାହା ସମ ନୁହେଁ ।



କୋଇଲି ମାଉସୀ କାଉ ।
ଦୁଧ, ଭାତ, ଚିନି, ଗୋଳାଇ ଆଣିଚି
ଖାଇ ଦେବ ଟାଉ ଟାଉ ।
କାଉର କାଳିଆ ପର ।
ସବୁଯାକ ଭାତ ଖାଇ ଦେଲେ ତତେ,
ସଭିଏ କହିବେ ଭଲ ।
ଭଲ ପିଲା ଯିଏ ହବ ।
ବଡ଼ ଭାଇ ଗଲେ ବଜାରକୁ
ତା'କୁ ଚକ୍‌ଲେଟ ଆଣି ଦବ ।



ବହୁଲ୍ଲ ଚଇତ ବାଆ
ଆମ୍ବ ନସି ଭଙ୍ଗା ସଜ-ପଖାଳ ରେ
ପେଟପୁରା କରି ଖାଆ ।
ପଖାଳ ସାଙ୍ଗକୁ ଭଜା
ପିଆଜ ଲଗେଇ ଖାଉଥିଲେ ଧନ !
ସବୁଠୁ ଲାଗଇ ମଜା ।



ବିଲରେ କଙ୍କଡ଼ା ଗାତ
କୁହୁଡ଼ି, କାକର, ଶୀତ ଆସିଚିରେ
ଖାଆନାଁ ପଖାଳ ଭାତ ।
ଗରମ ଭାତରେ ଡାଲି
ଗୋଳେଇ ଦଉଚି, ତରକାରି ସାଙ୍ଗେ
ଥାଳି କରିଦେବ ଖାଲି ।



ଘିଅ ପୁଚୁ ପୁଚୁ "ଖେଚେଡ଼ି ଭାତକୁ
ବାସନା-ଗୁଜୁଳ ଝିଅ
ଥର ଥର କର ଖାଉଥିଲେ "ଜଉ"
ହସୁଥାଏ କଶ କଶ ।
ବୋଉ ବାଢ଼ିଦେଲେ ଭାତ ଡାଲି ଆଉ
ଚଙ୍ଗୁଡ଼ି ମାଛର ଝୋଳ
ମୁଁହ ହାତ ଧୋଇ ଚର ଚର ହୋଇ
'ଜଉ' ଖାଇବସେ ମୋର ।
(କଣ୍ଟା ନ ଥିବା ହେତୁ ଶ୍ରେଷ୍ଠ ପିଲାମାନେ ଚଙ୍ଗୁଡ଼ିକୁ ଭଲପାଆନ୍ତି)



ଅରୁଆ ଭାତକୁ ବଦଳ ଡାଲମା
କୋଶଳା ଶାଗକୁ ବଡ଼
ବାଢ଼ି ଦେଉଛ ମୁଁ ବେଗେ ଖାଇ ଦେଏ
ଯିବୁ ପଶ୍ବ ପାଠ ପଢ଼ି ।
ସଠେଇ ହୋଇଲେ ତେଣ ହୋଇଯିବ
ପଛରେ ବସିବୁ ଯାଇ
ଆଗ ଯିବା ପିଲା ଆଗେ ବସିଥିବେ
ହସୁଥିବେ ତୋତେ ଗୁଣ୍ଡି ।



ଗଲା କାଲିଠାରୁ ଦହରେ ତୋହର
ଭରଡ ହୋଇଛ ଜର
ସାଗୁ କ ବାଲି ରୁ ପିଇ ଦେ'ରେ ଧନ
ଖାଇ ଦେ ଦଉଛ ଫଳ ।
ଅଉଷଧ ନେଏ ଖାଆ
ଦେହ ଭଲ ହେଲେ ଭାତ, ମାଛ, ମାଂସ
ଦେବି ମୁଁ ଖୋଜବୁ ଯାହା ।



ଖଣ୍ଟା ଝିଆ ମୋ'ର ପୁଅଟି
ଆଗୁର ଦେଖିଲେ ଲୁହ ପାଟି ତା'ର
ଟିକେ ହେଲେ ଅପ୍ସ ନୁହଁଟି ।

ଯାଚଲେ ନଖାଏ ଛେନା, ପୁରି, ଲଡ୍ଡୁ,
ଭଜା, ଡାଲି, ମାଛ, ଭାତକୁ
"ଆସ୍ଥର ଟିକଏ ନେ" କହିଦେଲେ
ହସି ସେ ବଢ଼ାଏ ହାତକୁ ।



ଗୁଣ୍ଡୁଚି ମୂଷା ଡାଳରେ ଡେଇଁ ପାଚିଲା ଫଳ ଖାଏ
ଗାତୁଆ ମୂଷା ଚାଉଳ, ଧାନ, ମୁଗକୁ ଭଲପାଏ ।
ଗାଈ ଖାଏ ଘାସ ନଡ଼ା, ଶୁଆ ଖାଏ ଧାନ
ମାଛ, ମାଉଁସ ଦୁଧ ଘିଅରେ ବିଲେଇଟିର ମନ ।
ବାଲୁଆ ନନା କଙ୍କଡ଼ା ଖୋଜି
ବିଲ ମାଳରେ ବୁଲେ
ରାତି ହୋଇଲେ ପିଜୁଳି ଖାଇ
ବାଦୁଡ଼ି ଡାଳେ ଝୁଲେ ।
କୁକୁଡ଼ା ଛୁଆ, ଚଢ଼େଇ ଛୁଆ,
ଖାଏ ଚାଉଳ ଖୁଦ
ମୋ ଜଉ ଖାଏ ଭାତ-ଡାଲି
ପିଏ ଗାଇର ଦୁଧ ।



ନୁଠୁରୁ, ପୁଠୁରୁ ପାଚିଲା ଆତଟି
ଭାରି ମିଠା ଖାଇବାକୁ
ତୁମରି ପାଇଁକି ଟଙ୍କାଟିଏ ଦେଇ
କିଣି ମୁଁ ରଖିଚି ତାକୁ ।
ପଚିଶ ପଇସା ଦେଇ ମୁଁ ଆଣିଚି
ପାଚିଲା ସପେଟା ଟିଏ
ଜୁନା, ଜୁନ ମୋ'ର ତୁମେ ଖୋଇଲେ
ଆଉ ବା ଖାଇବ କିଏ ?
ଖାଇ ଦିଅ ମୋର ଧନ !
ଫଳ ଖାଇ ତୁମ ଦେହେ ବଳ ହେବ
ଖୁସି ବି ରହିବ ମନ ।



ଆମ କୁନା ସୁନା ପୁଅ
ତାଙ୍କେ ନାହିଁ ଜମା ଲୁ ।
ଖାଇବାକୁ ଭଲପାଏ
ଝିଲ୍ଲି, ପୁର, ଅମାଲୁ ।
ତଳେ ଯିଏ ଗଡ଼େ ନାହିଁ
ମଳି, ଧୂଳି, ଦୁଏନାଁ ।
ସୁନା ପୁଅଟିଏ ଯିଏ
ରଗି, ବୁଝି ଶୁଏ ନାଁ ।
ଯେତେ ସବୁ ସାଥି ତା'ର
ଠିକ୍ ତାଆ ଭଲଆ ।
କେହୁ ନୁହନ୍ତି କାନ୍ଦୁରା ନୁହନ୍ତି ବ କଲଆ ।

□

ଆଉଙ୍କି ଆମର କହିଲେ ଅଜା
ଖାଉ ସୁଆଦଆ ତାଳର ଗଜା ।
ତାଳଗଛ ଆଗେ ବାଇଆ ବସା
ବାସି ହୋଇଯିବ ପୋଟଳ ରସା ।
ବାଇ ଚଢ଼େଇରେ ସଅଳ ଆ
କୁନା ସାଙ୍ଗେ ବସି ପେଟେ ରୁ ଖାଆ ।
ମାଆ ଆଗେ ଯାଇ କହିବୁ ତୋର
କୁନା ଛୁଉଁନାହିଁ ଜମା ମୋ କୋଳ ।

□

ଛେନାଗଜା, ଲଡ୍ଡୁ ଖାଇବା ପାଇଁକି
କୁନାକୁ ଲାଗଇ ମଜା
ଦୋଳ ଯାତରାରୁ କିଣିକରି ତେଣୁ
ଆଣିଥିଲେ ତାକୁ ଅଜା
ମାଆ କରିଥିଲେ
ଅରିଷା-କାକରା
ଚକୁଳି, ଚଡୋଇ ଝିଲ୍ଲି ।
ଅଜାଙ୍କ ସାଥିରେ
ଖାଉଥିଲା କୁନା
ସବୁକୁ ଏକାଠି କରି ।

□

ମୋ'ର ପୁଅକୁ ଦଅରେ କଦଳୀ
ତା'ର ଚେହେରାଟି ଯିବ ବଦଳି ।
ପୁଅ ଖାଇଦେଇ ଆମ୍ବ
ଯିଏ ପାଠରେ ହୋଇବ ଆଗ ।
ପିଜୁଳି ଖାଇଲେ ପୁଅ
ଘର ଟାଣୁଆ ହବ ତା' ଦନ୍ତ ।
ଖାଉ ସେ ପଇଡ଼, ନଡ଼ିଆ
ତା'ର ଅକଲ ହୋଇବ ବଢ଼ିଆ ।
ପଣସ, ସପେଟା, ଆତ
ଖାଇ ବାଘକୁ ମାରିବ ନାତ ।
ଦେଲେ ଫୁଟି ତରଭୁଜ ଖାଇ
ତାକୁ ଗରମ ବାଧିବ ନାହିଁ ।



ଖଡ଼ା କଥାଗ୍ରଚି ଝାଉଁଳି ପଡ଼ିବ
କୃଅପାଣି ମହେଇଲା
କଅଁଳ କାକୁଡ଼ି ରସରସିଆ ଲୋ
ପୁଅପାଇଁ ଛଡ଼େଇଲା ।
ତୋଳିଲି କୋଶଳା ଶାଗ
ଖେଳ ଖେଳି ପୁଅ ହାଲିଆ ହେଲାଣି
ଖୋଇଦେବି ତାକୁ ଆଗ ।



ବଇଶାଖ ମାସ
ରଡନିଆଁ ପରି
ଖରାଜାଳି ଦିଏ ଦହି ।
କୁନା, କୁନି ମୋର
ଝାଉଁଳି ଗଲେଣି
ଛେନା ପଣା ତାଙ୍କୁ ଦଅ ।
ଦଅ ବା ପଇଡ଼ ପାଣି
ଆମ୍ବ ପୋଡ଼ିଦେଇ
ସରବତ୍ କରି
ପିଇବେ ସେ କଥା ମାନି ।



ଆଜ ପଡ଼ର କ
ଭାତ ପଡ଼ର
ନେହଲ ମାଛର ଡିଆଁ ।
ଶୋଇ ଉଠିଲଣି ବାବୁନ୍ ଆମର
ଖୋଇଦଅ ଜଲଖିଆ ।
କ୍ଷୀର-ଚନା ପାଉଁରୁଟି ।
ଖାଉଥିଲେ ଆମ ବାବୁନ୍ ମୁଁହରେ
ହସ ଉଠୁଥିବ ଫୁଟି ।



ଜଗୁକୁ ଭୋକ ଜବର ।
ଇଡ୍‌ଲି, ଦୋଷା, ସମ୍ବର
ସଜାଇ ଦଅ ବାଢ଼ି ।
ହାତକୁ ଧୋଇ ବସିବ ସିଏ
ଚକାଟି ଦେଇ ପାରି ।
ଟିକ ହାତରେ ପାଟିକି ନବ ।
ଟିକ ଦାନ୍ତରେ ଚୋବେଇ ଦବ,
କଅଁଳ କୁନ ଜିଭରେ ସବୁ
ପେଟକୁ ଦବ ଠେଲି ।
ଖାଇ ସାରିଲେ ଜେଜେ ମା ସାଙ୍ଗେ
ଖେଳିବ ବସି ବେଲି ।



ଗୁଣ୍ଡୁଚ ମୂଷା, ଗୁଣ୍ଡୁଚ ମୂଷା କାକୁଡ଼ିଟିଏ ଖା ।
ଖୁସୁରୁ ଖୁସୁ ଡେଇଁ ଡେଇଁକା
ଗଛକୁ ଚଢ଼ି ଯାଆ ।
ଗୁଣ୍ଡୁଚ ମୂଷା ମୋ 'ଜଗୁ'କୁ ପିଜୁଳିଟିଏ ଦେ ।
ସିଏ ଖାଉ ଟୋ ପିଜୁଳି
ତୁ'ତା ଭାତ ଚାଟିଆ ନେ ।

ଭାତ ସାଥିରେ ବାଢ଼ି ଦେଇଛ
ଚଅଣ, ଡାଲି-ଭଜା
ଡାଳରେ ବସି ଖୁସିରେ ଖାଆ
ଲାଗିବ ଭାରି ମଜା,



ଆ'ରେ ମୋ ଧନ ସଜ୍ଜଳ ଆ
ମୋ କୋଳରେ ବସି ଭାତ ତୁ ଖାଆ ।
ଖାଇସାରି ଶୁଅ ଧନଟି ମୋର
ଶେଯରୁ ଉଠିବୁ ହୋଇଲେ ଭୋର ।
ପୂର୍ବ ଆକାଶେ ସୂରୁଯ ଉଇଁ
ଖରା ହାତେ ତୋତେ 'ଦେବେଟି ଛୁଇଁ ।
ଫୁଲ ସବୁ ତୋତେ ଡାକିବେ ଆସ
ଡାକିବ ସାଗୁଆ କଅଁଳ ଘାସ ।
ଗଛୁ ପଡ଼ୁଥିବ କାକର ଖସି
ସବୁରିଙ୍କୁ ଚାହିଁ ଦବୁ ତୁ ହସି ।



ବେଙ୍ଗୁଲି ବେଙ୍ଗୁଲି ଦେଏ ଲୋ ପାଣି
ମାଆ ରନ୍ଧିଚନ୍ତି କାକରା ଛଣି ।
ବାପା ଆଣିଚନ୍ତି ବାଦାମ ଭଜା
ଜେଜେ କିଣିଚନ୍ତି ଜମିକ-ଗଜା ।
ଖୁଡ଼ି ଭାଜିଚନ୍ତି ଗରମ ମୁଢ଼ି
ମୁଆ ବଳିଚନ୍ତି ଜେଜେମା ବୁଢ଼ୀ ।
ତୁ ମୁଁ ଦହେଁ ଖାଇବା
ଖେଳି ବୁଲି ଗୀତ ଗାଇବା ।



ଆମର ମୁନ୍ନା ପକ୍କା ସୁନା
ଖାଏ ନାଁ ଜମା ଭାତ
ରସଗୋଲାଟି ଯାଚଲେ ମାଆ
ବଢ଼ାଏ ହସି ହାତ ।

ଆମର ମୁନ୍ନା ପକ୍କା ସୁନା
ଶିରକ ଭଲ ପାଏ
ବାଦାମ ପକା ସିମେଇ ଶିଷ୍ଟି
ବେଲ୍ଲଏ ଧର ଖାଏ ।

ଆମର ମୁନ୍ନା ପକ୍କା ସୁନା
ଖାଏ, ପଢ଼େ, ଖେଳେ
ଯେତେ ବେଳେ ଯାହା କରବା କଥା
କରଇ ସେତେବେଳେ ।



ଆମ ମିଣ୍ଟୁ ଢନକର ଖାଇଥିଲା ଅଣ୍ଡା
ଛେନାପୁର ଦଆ ଛଣା ମଣ୍ଡା ଦୁଇଗଣ୍ଡା ।
ଗୁଣ ଗୁଣଟା ଚକୁଳି ଯୋଡ଼ା ଯୋଡ଼ା ବଗ
ଗୋଟାକୁ ଗୋଟା ଆରିଷା ଶିଶୁ ଚନ ସବୁ ।
ସବୁ ମିଶି ମିଣ୍ଟୁ ପେଟେ
କଲେ ହସ ଖେଳ
ଭାଇ କାଇ କଟିଗଲା
ଆମ ମିଣ୍ଟୁ ବେଳ ।



ଉଠ ଧନ ମୋର ଖୋଲରେ ଆଖି
କାହୁ ଗବ ଦେଇ ଗଲାଣି ଡାକି ।
ଗୁଲେ ପଡ଼ିଲାଣି କଅଁଳ ଖରା
ପାଠ ପଢ଼ିବାକୁ ଯିବୁ ରୁ ପରା ।
ବେଗେ ମୁହଁ ଧୋଇ ଦାନ୍ତ ରୁ ଘଷ
ଆସନ ପକେଇ ମୋ ପାଖେ ବସ ।

ବାଡ଼ି ଦେଉଅଛୁ ଖୁସିରେ ଖାଆ
ସାଥି ମେଳ ହୋଇ ଇସ୍କୁଲ ଯାଆ ।



ଚାଉଳ ତଳେ ମୂଷାଟି ହୁଏ ଖୁସୁରୁ ଖୁସୁ ଖୁସ୍
ବଣ ଗାଈକେ ହାତୀ ଦଉଡ଼େ ଭୁସୁରୁ ଭୁସ୍ ଭୁସ୍ ।
କୁମ୍ଭୀ କହନ୍ତି କୁନା କାନରେ ଫୁସୁରୁ ଫୁସ୍ ଫୁସ୍
ବରଷା ପାଗେ ଗରମ୍ ମୁଢ଼ି ଖାଇବା ମୁସ୍ ମୁସ୍ ।
ଗୋଲେଇ ଦବା ପିଆଜ ତେଲ ଲାଲ୍ ବଲାଡ ଯୁଣ୍
ତା' ସାଙ୍ଗକୁ ଆହୁରି ମଜା ପକୁଡ଼ି, ବରା, ଠୁସ୍ ।



ପୁଅ କାନ୍ଦୁଥିଲା କହିଁ କହିଁ ହୋଇ
ମାଆ ବୁଝାଇଲେ ତାକୁ
"କାଖ କରିନେବ ରଥ ଦେଖେଇବ
ଖାଇ ଦେବ ଟାକୁ ଟାକୁ ।"
ପୁଅ କଲା ଏଡ଼େ ଆଁ
ମାଆ ଖୁଆଇଲେ ପୁଲି ପୁଲି କରି
ବାଡ଼ି ଆଣିଥିଲେ ଯାହା ।



ଧଳା ସର ସର କାଉଁରିଆ କାଠି
ସହଜରେ ଯାଏ ଭାଙ୍ଗି
କଦଳୀକୁ ପୁଅ ଭଲ ପାଉ ବୋଲି
କାଣ୍ଡିଏ ଦେଇଚି ଟାଙ୍ଗି ।
ଭଲ ହୋଇ ପିଏ ପାଚିଗଲା ପରେ
ଖାଇବୁରେ ମୋର ଧନ
ପାଚିବା ଆଗରୁ ଖାଇବୁ ଯେବେ ତୁ
ପାଟି ହେବ କଷାବଣ ।



ଆଳୁଚପ୍ ଆଳୁଚପ୍
ତଟତ ଦେଖି କୁନା ପାଟିରୁ
ପାଣିଗଡ଼େ ଅପ୍‌ଥପ୍ ।

ଖାଇଦେଲେ ଭଲ ଲାଗେ, ଗୁଡ଼ ହୁଏ ଦପ୍‌ଦପ୍
ପେଟ ଭାରି ମୋଡ଼ି ହୁଏ ମଥା ହୁଏ କପ୍ କପ୍ ।



ଟିକି ଦାଦା ଗଲେ ବଜାର ବୁଲି
ସାଙ୍ଗେ ନେଇଥିଲେ ଗୋଟିଏ ଝୁଲି ।

ଝୁଲିରେ ପୁରାଇ ଆଣିଲେ ମାଛ
ମାଆଙ୍କୁ କହିଲେ ଜଲଦି ବାଛ ।

ବାଛୁ ସାରି ମାଆ କରିଲେ ଭଜା
ଦାଦା, ଜରୁ ଖାଇ ମାରିଲେ ମଜା ।



ପଇଡ଼ ପାଣିଟି ମଧୁର ଭାରି
ପିଇ ଦେଏ ତାକୁ ଗିଲାସେ ଢାଳି ।

ଖାଇ ଦେଏ ନାଲି ନଡ଼ିଆ
'ଗଡ଼ଗଡ଼ିଆ'ରେ 'ବାଲିଯାତ' ହେବ
ଦେଖିବାକୁ ଭାରି ବଢ଼ିଆ ।

ତୋଫା ଜହ୍ନ ପଡ଼ିଥିବରେ
ମହାନଦୀ ପାଣି ସଫା ଦିଶୁଥିବ
ନାଆ ଖେଳିବାକୁ ଯିବରେ ।



"ଫଳ ଖାଇଲେ ବଳ ବଢ଼ିବ"
କହିଲେ ଆମ ଅଜା
ଯନ୍ତୁ ସଦା ବାପି ଜଣକ
ପାଖକୁ କେବେ ନ ଯା ।

ଆଉ କହଲେ ପାଣିକୁ ଛୁଣି
ପିଅ ମୋ କୁନି, କୁନା
ରୋଗ ତୁମକୁ ଛୁଇଁବ ନାହିଁ
ଦେହଟି ହେବ ସୁନା ।



ଆମ୍ବ ପଛକେ ଖଟା ଲାଗୁଥାଉ
ପଣସ ପଛକେ କଷି ହୋଇ ଥାଉ
ନଡ଼ିଆ ପଛକେ ଗଛ ଅଗେ ଥାଉ
'ଜିତୁ'ର କଅଣ ଯାଉଚି ।
କେଜେ ଆଣିଚନ୍ତି
ସେଓ, ନାସପାତି
ସିଏତ ମଜାରେ ଖାଉଚି ।
ବାପା ଆଣିଚନ୍ତି ବେଦେନା, କମଳା
ଖଜୁର, ଅଙ୍ଗୁର କୋଳି ।
ମୋ ଜିତୁ ଖାଉଚି—ଭାଇକୁ ଦଉଚି
ଦୁହେଁ ଖେଳୁଚନ୍ତି ହୋଲି ।



ଛାଟିଆ ଉପରେ ଛାଟିଆ ।
ଫସର ଫାଟିଲା କାନ୍ଥ କା' କଲା
ଶେଯ ଗୁଡ଼ ଏବେ ଉଠିଆ ।

ବୁଲ୍‌ଆ କଅଁଳ ଖରାରେ ।
କଅଁଳ ଖରାଟି ଗୋରା ବଇରାଗ
ଝାଡ଼ ଝୁଡ଼ଦଏ ପରା ରେ ।



ହେମାଳ ପବନ ଛୁଇଁଲା ଯେମିତ
ଦାନ୍ତଟା ଉଠିଲା ଶିଡେଇ
ଅ'ମ ଟିକି ବାବୁ କାହାକୁ ମାରେନା'
କାହାକୁ ହୁଏନା ଖଟେଇ
କାହାଠାରୁ କିଛି ଛଡେଇ ଖାଏନା
ମାଆ ଯାହା ଦେଲେ ଖାଏ ।
ଦଶଟା ବାଜଲେ ଛବବନ୍ଧ ଧର
ଇସ୍କୁଲ ସିଏ ଯାଏ ।



ଆଖୁ ବାଡ଼ି ଖର ଖର ।
ବରଷାରେ ଭୁନା ଓଦା ହେଲୁ ବୋଲି
ହେଲା ତତେ ଏତେ ଜର ।
ଅଉଷଧ ଟିକେ ଖାଇଦେଏ ଏବେ ଜର ତୋର ଗୁଡ଼ ଯାଉ ।
ମନେ ରଖିଥାଅ ବରଷା ପାଣିରେ
ଓଦା ହେବୁ ନାହିଁ ଆଉ ।



ଭୁମା ଯାଉଥିଲା ଏଣେ ତେଣେ ଗ୍ୱହିଁ
ଇଟା ଝୁଣ୍ଟି ଗଲା ପଡ଼ି ।
କଅଁଳ ନଖଟି ଉଠିଗଲା ଛାର
ରକତ ପଡ଼ିଲା ଝରି ।

କହୁଲେ ତା ଜେଜେ ମାଆ ।
"ଏଣେ ତେଣେ ଘୁହିଁ ଘୁଲିବାର ମଜା
ଭଲକରି ଏବେ ପାଆ ।
ଜମାତ ବୁଝିଲୁ ନାହିଁ ।
ଗାଡି କ ମଟର କେତେବେଳେ ତତେ ଧକ୍କା ଦବ ଏଥିପାଇଁ ।



ହୀରାକୁଦ ବନ୍ଧ ଛୁଡ଼ୁଚ ପାଣି ଲୋ
ନଈରେ ପଡୁଚ ସୁଅ ।
ପିଲାଙ୍କ ଭିତରେ ଭଲ ପଢ଼ିବ ଯେ
ସିଏ ହେବ ସୁନା ପୁଅ ।
ସୁନା, ପୁଅ ସିଏ ମାଡ ଗାଳି ସିଏ
କାହାଠାରୁ ଖାଏ ନାହିଁ ।
ଖେଳି, ବୁଲି, ପଢ଼ି ବେଳଯାଏ ତା'ର
ସବୁରି ମେଳରେ ଥାଇ ।



ବୀରଟିଏ ହୋଇ ମୋ ଟିକି ବାବୁ
ବଇରୀ ଦଳକୁ କରିବ କାବୁ ।
ଲଢ଼େଇ କରିବ ଦେଶର ପାଇଁ
କାହାରି ପାଖେ ସେ ହାରିବ ନାହିଁ ।



ଘରଠୁଁ ବାହାର ସବୁ ସଫାକରି
ଶୋଇଥିଲେ ମାଆ ଖୁଡ଼ି ।
ସୁନା ପୁଅଟି ମୋର ଅଳିଆ କରେନା,
ବୁଣି ଦେଇ ଚୂଡ଼ା-ମୁଢ଼ି ।
ଘରେ ଢାଳେ ନାହିଁ ପାଣି ।
ପାଣି ଢାଳିଦେଲେ କାଦୁଅ ହୋଇବ
ଗୋଡ଼ ଖସିଯିବ
ଏକଥା ଅଛୁ ସେ ଜାଣି"।



ପାଣ୍ଡିଚେରୀ ଯାଇ ଆମ ଖୁନା ଖୁନୀ
ଦେଖିବେ ଜାହାଜ ମାନ ।
ବିଦେଶରୁ ଆସି ଲାଗିଛି ସିଏ
କେଏ ବଡ଼ କଏ ସାନ ।
ସମୁଦ୍ର କୂଳରେ ବୁଲିବେ ସେଠି
ଦେଖିବେ ମାଛର ହାଟ ।
ବୁଲିବୁଲି କରି ମାଛ କଣି ସାରି
ଧରିବେ ନଜର ବାଟ ।



ଆରେ ଆରେ ଆରେ ଏଇଟି କିଏ ?
ହାତରେ ତାହାର ବନ୍ଧୁକଟିଏ ।
ଫାରସ ପୋଷାକ ଫାରସ ବେଶ—ଜଗିବ କହୁଛି ଆମର ଦେଶ
ଆରେ ! ଇଏତ ଆମର ଖୁନଆଁ
ବଇଣି ମାନେ ତ ଦେଖୁ ଦେଖୁ ତା'କୁ
ପଳେଇବେ ହୋଇ ଗୁନଆଁ ।



'ଜରୁ' କାନ୍ଦୁଥିଲା ଭେଁ ଭେଁ ହୋଇ
ଜବର କଚଡ଼ା ଖାଇ
ମାଆ କହିଲେ ଭୁ ଯେତେ ମନାକଲେ
ପାଣି ଢାଳୁ କାହିଁ ପାଇଁ ।
ପାଣି ଢାଳି ପୁଣି ତାହାର ଉପରେ
ଡେଇଁ ବାରୁ ଫଡ଼, ଫଡ଼
ପଡ଼ିଗଲୁ ଭୁଇଁ ମିଛଟାକୁ କାନ୍ଦ
ହେଉଛୁ କାହିଁ ସକ ସକ ।



ଆଷାଢ଼ ଖର ଖର
ବରଷାରେ ସୁଅ ଓଦା ହେଲୁ ବୋଲି
ହେଲୁ ତତେ ଏତେ ଜର ।

ଅଉଷଧ ଟିକେ ଖାଇ ଦେବେ ଏବେ
ଜର ତୋର ଛାଡ଼ି ଯାଉ
ମନେ ରଖିଥା'ଆ ବରଷା ପାଣିରେ
ଓଦା ହବୁନାହିଁ ଆଉ ।



"ଜବର କର ବାଡ଼ିକୁ ଧର
ଗୋଟିକ ଗୋଟି ପାହାଚ ଚ଼ଲ
ଆ'ରେ ପୁଅ ଆ ।
ନହେଲେ ନାହିଁ ପଞ୍ଚ ପିଭୃଟି କହିଲେ ତା'କୁ ମାଆ ।
ଅମାନଆଁ ଟା ତେଭିଲା ଖାଲି ହାତକୁ ଦେଇ ଛାଡ଼ି
ଦୋଚାଲା ପିଡ଼ି ପାହାଚୁ ଗଡ଼ି ଗୁଡ଼ିଲା ଭେଁଏ ରଡ଼ି ।
ଟିକ ମଶାଟିର ଟିକ ଶୁଣ୍ଢିଏ ରକତକୁ ନଏ ଶୋଷି
"ମଶାର ନହେଲେ ଶୋଇବ ନାହିଁ ମୁଁ ଜ୍ଵରୁ ହେଉଥାଏ ଘୋଷି" ।



ନା, ନା ନ ମାନଲା କ୍ଷୁଣ୍ଣ ଖାଇଦେଲା
ବାରମଜା ମୁଠା ମୁଠା
ଗଡ଼ ଯାକ ତା'ର ପେଟ ମୋଡ଼ିହେଲା
ହେଲା ପିଏ ପକା ଉଠା ।
ହେଲା ବାନ୍ତି ଆଉ ଝାଡ଼ା
ଦୁହେଁଯାକ ତା'କୁ ଶୁଆଇ ଦେଲେନ
ଧାଇଁଲା ସେ ଗଡ଼ ସାରା ।



ମିଟୁ ଆଣିଥିଲା ଛେନାଗଜା କିଣି
ବାପାଙ୍କ ସାଙ୍ଗରେ ଯାଇ
ଅପାକୁ ଲୁଚେଇ ଥୋଇ ଦେଇ ଥିଲା
ଭୂଆ ସବୁ ଦେଲା ଖାଇ ।
ମୋଡ଼ି ହେଲା ପିଏ କାନ
ସେଇଦନୁ ପିଏ ଲୁଚେଇ ରଖେନଁ ।
ଖାଇବା ଜିନଷ ମାନ ।



ଆମ ଦେଶ ଆମ ମାଆଟି
ଜୁନା, ଜୁନ ଯେବେ ବଡ଼ ହୋଇଯିବେ
ରଖିବେ ତାହାର ନାଆଁଟି ।
ଉଜାଗ୍ରିଟିଏ ସେ ଉଜ ମାଗୁଥିଲେ
ଫୁଙ୍ଗୁଲା ଥିଲେ ତା' ଦନ୍ତ
'ଜରୁ' କହେ ମାଆ ଅଣ ଯାଉଚ ସେ
ଜାମାଟିଏ ତାକୁ ଦଅ ।
ଗରମ ଗରମ ଭାତ
ବାଢିଦଅ ତା'କୁ ଖାଇକରି ତା'ର
ଟାଣ ହେଉ ଗୋଡ ହାତ ।

□

ରୁରୁ ବେଙ୍ଗ ଦୁହେଁ କଳି କରୁଥିଲେ
ମଣ୍ଡା ପିଠାଟିକ ପାଇଁ
କାଉ ଝାମ୍ପି ନେଇ ଚୁ କରି ଦେଲା
କାହାର ହୋଇଲା ନାହିଁ ।
ଆଉ ଆଣି ଦେଲେ ମାଆ
କହିଲେ "ଏଥର କଳି କର ନାହିଁ
ଘରେ ବସି ଜଣ ଖାଆ" ।

□

ପାଣି କାଦୁଅରେ ଗୋଳେଇ ହୁଏ ଯେ
ଦନ୍ତ ତାର ହୁଏ ମଳ
ରୋଗ ଡକ ଡକ ଲୁପଟି ଦଶେ ତା
ମର୍ଦ୍ଦିଆ ଲୋକ ଭଲ ।
ଦାଆ, ବଥ, କାଛୁ ମିଳି ମିଶି ତା'ର
ଦନ୍ତରେ କରନ୍ତି କସା
କଳବଳ ହୋଇ କାନ୍ଦି ଗଡ଼ି ଯିଏ
ଖେଳୁଥାଏ 'ଶଙ୍କ' ଦଶା ।

□

ଖଚ୍ଛରୁ ପତର ଝଡ଼େ
ଟେବଲ କୁଡ଼ଗଲେ ଆମ ପୁଅ ପାଠ ପଢ଼େ ।

ପୁଅ ପଢ଼ା ଦେଖି ଟିକି ଭାଇ ତା'ର
ଛବି ବହି ଖୋଲି ଦେଇ
କୁକୁର, ବିଲେଇ, ଗାଈ, ଛବି ଦେଖି
ନାଚ ଉଠେ ଥେଇ ଥେଇ ।



'ଜରୁ, ମିରୁ, ଗୁରୁ ତିନୋଟି ଭାଇ
କଳିଗୋଳ କେବେ କରନ୍ତି ନାହିଁ ।
ଖାଆନ୍ତି—ପଢ଼ନ୍ତି—ଖେଳନ୍ତି ମିଶି
ସବୁବେଳେ ତାଙ୍କ ମନଟି ଖୁସି ।



ଆମ ଡୁଲୁ ବାବୁ ବାଟ ଚାଲୁଥିଲା ମାଡ଼ି ମେ ନଥିଲା ଯୋତା
କଅଁଳ ଚମକୁ ଫୁଟେଇ ଦେଇ ତା ପାଦରେ ଫୁଟିଲା କଣ୍ଟା ।
ଭେଁ କରି କାନ୍ଦି ବସିଲା ସେଇଠି
ଆଉ ନ ପାରିଲା ଯାଇ
ପାଟି ଶୁଣି ତା'ର ଅଜା ଆସିଗଲେ
ଆସିଗଲେ ପୁଣି ଆଈ ।
କାଖ କରି ଅଜା ଘରକୁ ଆଣିଲେ
ମାଆ ଦେଲେ କଣ୍ଟା କାଢ଼ି
"ଖାଲି ପାଦେ ଆଉ ଚାଲିବନି" କହି
ଡୁଲୁ ହେଲା କାନ ମୋଡ଼ ।



ଅଠାର କାଠି କି ପିଠାର କାଠି
ଜିତୁ ଚାଷକଲା ଚଉଦ-ବାଟି ।
ଲଗାଇଲା ଆମ୍ବ, ଗୁଆ-ନଡ଼ିଆ
ବଗିଚା ଦିଶିଲା ଭାରି ବଢ଼ିଆ ।
ଚାଷକଲା ମୁଗ, ଗହମ, ଧାନ
ଫଳେଇଲା ସବୁ ପରିବା-ମାନ ।
ଘରକୁ ସେ ସବୁ ଆଣିଲା ବୋହି
ସାବାସ୍ କହିଲେ ବାପା-ମା'-ଭାଇ ।



ଗରଜିଲା ମେଘ ବରଷେ ନାହିଁ
ପାଠ ନ ଆସିଲେ ଦେବ ମୁଁ କହି ।
ବେଗେ ବସ ବହି ଧର
ଦେଖି ଦେଖି ଯାଅ ପଢ଼ି ।
ପଢ଼ିଲେ ଜାଣିବୁ ସବୁ
ନ ପଢ଼ିବୁ ଯେବେ
ମନେ ରଖିଥାଅ
ମୂରୁଖ ଗୋଟିଏ ହବୁ ।



ଏଣିକି ତେଣିକି ଚାହଁାନା ।
ମିଛରେ କରନାଁ ବାହାନା ।
ମନ ଦେଇ ପାଠ ପଢ଼ ।
ଦେଶ ବିଦେଶରେ
ନାଆଁ ତୋ ରହିବ
ଧନେ ତୁ ହୋଇବୁ ବଡ ।



ବାଘ ଅଇଲା ରେ ବାଘ ଅଇଲା
ଆମ ପୁଅ ତାକୁ ଡରେଇ ଦେଲା
ଗୁନଆଁରେ ବାଘ ପଳେଇ ଗଲା
ଲୁଚିକରି ଯାଇ ବଣେ ରହିଲା ।
ସେ ଦିନୁ ସେ ହେଲା ବଣର ରଜା
ପଶୁ ଯାକ ଖାଇ ମାରିଲା ମଜା ।



ଛେନାଗଜା, ଲଡ଼ୁ, ଦେଲେ ମୋ' ଡୁଲୁବୁ'
ଏକା ସିଏ ଖାଏ ନାହିଁ ।
କହେ ଆମ ସବୁ ଏକାଠି ଖାଇବୁ
ଯେତେକ ଭଉଣୀ ଭାଇ
ଟିକି ଭଉଣୀ ତା ଠୁକୁ ଠୁକୁ ଚାଲି
ପଡ଼ି ଉଠି କାନ୍ଦେ ଯେବେ ।

'ଭୁଲ୍'ଟି ଆମର ଗେଲ କରି ତାଙ୍କୁ
ଭାଷା କରି ଦିଏ ତେବେ ।



ଧରି ଶିଶୁବଣ ଲାଗି ରହୁଛ ଲୋ
ବରଷା, ପବନ, ଝଡ଼ ।
ମୋ ପୁଅ ହାତକୁ ସୁନ୍ଦର ଦଣ୍ଡଟ
ପିଲଟ ସାଙ୍ଗକୁ ଖଡ଼ ।
ଖଡ଼ିଟି ପଡ଼ିଲା ଖସି ।
ପୁର ମୋ'ର ଯିବ ବିଦେଶ ପଢିଲେ
ଉଡ଼ା ଜାହାଜରେ ବସି ।



ଗୋଳ ପାଣି ନେଇ ଆସିଲା ବଢ଼ିଲେ
କୂଳ ମାଟି ଗଲା ଦବି ।
ରଙ୍ଗ ଆଉ ତୁଳି କିଣି ଆଣିଦେଲେ
ମୋ ପୁଅ ଆଙ୍କିବ ଛବି ।
ନାଲି, ନେଳୀ, ହଳଦିଆ ।
କଳା ଧଳା ରଙ୍ଗ ଦେଖି ଗୁନ୍ଥି ଦେଲେ
ଛବି ହେବ ସୁନ୍ଦରିଆ ।



ଦାଆ ଦିଏ ଧାନ କାଟି
'ଜରୁ' ଯେବେ ମୋର ପାଠ ପଢୁଥାଏ
କରେ ନାହିଁ ବଡ଼ ପାଟି ।
ଥିଲ ଥିଲ କଥା ତା'ର
ଯେତେ ଶୁଣୁଥିଲେ ମନ ହେଉଥାଏ
ଶୁଣିବାକୁ ବାର ବାର ।



ସାତ ସମୁଦର ଲୁଣିଆ ପାଣି
ସେ ପାଣିରେ ବୁଡ଼ିବ ଯିଏଟି ।
କେତେ ନୂଆ ଚିଜ, ଗଛ, ମାଛ ସବୁ
ଦେଖିବ, ଆଣିବ ସିଏଟି ।



ଲୁଲୁଟି ଆମର ସୁନା ପୁଅ
ସବୁବେଳେ ତାର ହସ ମୁହଁ ।
ବଡ଼ ସକାଳୁ ସେ ଉଠି ପଢ଼େ ।
ନିଜେ ନିଜେ ତା'ର କାମକରେ ।
ମାଆ ଯାହା ଦେଲେ ଖାଇ ଦେଇ ।
ପାଠ ପଢ଼ି ବସେ ବହି ନେଇ ।
କଣ୍ଡଗୋଳ କେବେ କରେ ନାହିଁ ।
ଏମିତିଆ ପୁଅ ଅଛି କାହିଁ ?



ମଶା ବେଶି ହେଲେ ମଶାରି ପକେଇ ଶୋଇବା
ମାଛି ବେଶି ହେଲେ ଗରମ, ଗରମ ଖାଇବା
ପିଇବା ପାଣିକି ସିଝେଇ, ଛାଣିକି ପିଇବା
ଲୁଗା ଜାମା ସବୁ ମଇଳା ହୋଇଲେ ଧୋଇବା ।
ସିନେମା, ଟି·ଭି. ରୁ ଭଲ ଭଲ କଥା ଶିଖିବା ।
ନୂଆ ପାଠ ଯାହା ପଢ଼ା ହେବ ମନେ ରଖିବା ।



ମାଳତୀ ଫୁଲର କଢ଼ି ।
ଆମ ପୁଅ ଯିବ ପାଠ ପଢ଼ିବାକୁ
ଧରି ତା ସିଲଟ ଖଡ଼ି ।
ସିଲଟରେ ରଙ୍ଗ ଗୁଳି ।
ଗୁଳି ଗଣି, ଗଣି, ଗଣିବା ଶିଖିଲେ
ଜମାରୁ ଯିବନି ଭୁଲି ।



ମେଘ ପଡେ଼ ଟୋପି ଟୋପି ।
ଆମରି ପୁଅକୁ ଖୁଶିଭଲ ମାନେ
ଜୋତା-ମୋଜା-ଜାମା-ଟୋପି ।
ଜୋତାରେ ରେଶମ ଫିତା ।
ବଡ଼ ହେଲେ ପୁଅ ବେଶି ପାଠ ପଢ଼ି
ହେବଟି ଜଗତ ଜିତା ।



ଏବେ ସିନା ଝିଅ ଟିକଟିଏ ବୋଲି
କୋଳ ମୋର ଛାଡ଼ୁନାହିଁ ।
ବଡ଼ ହେଲେ ତା'ର ବାପାଙ୍କ ଭଳି ସେ
ଚାକରି କରିବ ଯାଇ ।
ଚଲାଇ ମଟର ଗାଡ଼ି ।
ଝିଅ ମୋର ଯେବେ ଆସୁଥିବ
ଲୋକ ଦେଖୁଥିବେ ଧାଡ଼ି ଧାଡ଼ି ।



ସାତ ସମୁଦର ଢେଉ କାଟି
ଯେଉଁ ଜାହାଜ ଆସିବ ଭାସି ।
ପାଠ ପଢ଼ା ସାରି ସେଇ ଜାହାଜରୁ
'ଜରୁ' ଓହ୍ଲେଇବ ଆସି ।
ବାପା, ମାଆ, କୁଲୁ, ଯାଇଥିବେ
ତା'ଙ୍କୁ ସାଥିରେ ଆଣିବା ପାଇଁ ।
ଦେଖୁ ଦେଖୁ ତା'କୁ ମୀନା ଧାଇଁଯିବ
ଡାକି ଡାକି "ବଡ ଭାଇ"



ଧରିଥିଲେ କିଏ ବେଲୁନ, ବଲ୍
କିଏ ନାହିଁ 'ଜରୁ' ଛଡ଼େଇ ।
ସାଙ୍ଗ, ସାଥି, ଭାଇ, ଭଉଣୀଙ୍କୁ ସେ
ମାରେ ନାହିଁ ତଳେ ଗଡେଇ ।
ଚକୋଲେଟ୍‌ଟିଏ ମାଗିଲେ କୁନି
ନଖାଇ ଦିଏ ସେ ବଢ଼େଇ
ଘର ପାଖ ବାଲି ଗଳାରେ ବସି
ଖେଳୁଥାଏ ବାଲି ହଟେଇ
ଭାରି ଭଲ ପାଏ ଖାଇବ ପାଇଁ
କାକୁଡିରେ ଲୁଣ ମଡ଼ାଇ ।
ଲଡୁ ଖାଇବାକୁ ଜେଜେଙ୍କ ଠାରୁ
ପଇସା ଦିଏ ସେ ଝଡ଼େଇ ।

ମନ ହୁଏ ତା'ର କୁନିକୁ ଟିକେ ଦିଅନ୍ତା କି ପାଠ ପଢ଼େଇ
ପଢ଼ି ତ ଆସିନି ନିଜକୁ କହୁ ଯାଏ ତେଣୁ ହୁଡ଼ବଡ଼େଇ ।



ମାଡ଼ି ଆସିଲଣି ବରଷା ବାଆ ।
କୁନ୍ ମୁନ୍ ମୋର ଘରକୁ ଆ ଆ ।
ଓଦା ହେଲେ ତତେ ଧରିବ କାଶ
କାଶି କାଶି ହେବ ଗଲା ପରସ ।
ଜରରେ ତୁ ପୁଣି ରହିବୁ ପଡ଼ି
କୁଣ୍ଠା ସବୁ ହେବ ଦେହଟି ଝଡ଼ି ।
ଖେଳା ବୁଲା କରି ପାରିବୁ ନାହିଁ
ଓଦା ହୁଅ ନାହିଁ ସେଇଥି ପାଇଁ ।



ତିନି ଚାରି ମିଶି ସାତ
ପୁଅ ଆସିଲଣି ପାଠ ପଢ଼ା ସାରି
    ମୁଁ ବାଢ଼ି ଦେବି ଭାତ ।
ଭାତରେ ଗୋଳାଇ ଡାଲି ।
କୋଳରେ ବସାଇ ଖୁଆଇ ଦେବଟି
    ଥାଳି ହୋଇ ଯିବ ଖାଲି ।
ଚାରି ଚାରି ମିଶି ଆଠ ।
ଇସ୍କୁଲଟିରେ ସବୁରି ଭିତରେ
    ପୁଅ ପଢ଼େ ଭଲ ପାଠ ।
ପାଞ୍ଚ ପାଞ୍ଚ ମିଶି ଦଶ,
ଯେତେବେଳେ ଦେଖେ ମୋ ପୁଅ ମୁହଁରେ
    ଲାଗି ରହିଅଛି ହସ ।
ଛଅ ଛଅ ମିଶି ବାର
ଅଜା ଆଈଙ୍କର ଗେଲ ବସର ସେ
    ମାଆଙ୍କର ଗଳାହାର ।



ଆମ ପୁଅ ଯିବ ଉଡ଼ାଜାହାଜରେ ଉଡି ।
ଚାହିଁ ଥିବେ ତାକୁ ଜେଜେ, ଜେଜେମାଆ ବୁଢ଼ୀ ।
    ବାପା, ବୋଉ-ଦାଦା ଖୁଡ଼ୀ ।

ଦୂର ବିଦେଶେ ସେ ପାଠ ପଢ଼ିବ ।
କେତେ ନୂଆ ନୂଆ କଥା ଜାଣିବ ।
ଘରକୁ ଆସିବ ଫେରି ।
ଦେଖିବାକୁ ତା'କୁ ଗାଆଁ ଗୋଟାଯାକ
ସଭିଏଁ ପଡ଼ିବେ ଘେରି ।



ଖଗ୍ର ମାଆ ଖଗ୍ର ଦେଏ
କାଦୁଅ ବାଟ ଶୁଖେଇ ଦେଏ
ବରଷା ଯାଉ ସରି ।
ଆମରି ପୁଅ ଇସ୍କୁଲ ଯିବ
ସିଲଟ, ବହି ଧରି ।



ବଣି ଚଢେଇରେ ବଣି ଚଢେଇ
ଆ 'ଜରୁ' ତତେ ଦବ ପଢେଇ
ମୁଁ କିଣି ଦେବି ବହି ସିଲଟ ।
ପାଠ ପଢିବୁ ତୁ ନକରି ମଠ ।
ପଢ଼ିଲେ ବହୁତ କଥା ଜାଣିବୁ ।
'ଜରୁ' ସାଙ୍ଗ ହୋଇ ଗୀତ ଗାଇବୁ ।
ଖେଳିବୁ ତା ସାଙ୍ଗେ ଦୋଳିରେ ଝୁଲି ।
ଦୁହେଁ ଯାକ ଯିବ ଯାତରା ବୁଲି ।



କ ଆକାର କା, ଖ, ଅକାର ଖା
ସିଲଟ, ଖଡ଼ି-ବହିକୁ ଧରି
ଇସକୁଲକୁ ଯାଆ ।
କ ଇକାର କି, କ, ଉକାର କୁ
ଚଞ୍ଚଳ ସ୍କୁଲ ବରଷା ଆସେ
ପବନ ବହେ ସୁଁ ।
କ ଏକାର କେ, କ, ଓକାର କୋ
ସାଥି ମେଳରେ କେଉଁଠି କେବେ
ହବୁନି ଯୋ ଯୋ ।

କ ଅଇକାର କୈ, କ ଔକାର କୌ
ମନ ଲଗାଇ ପାଠ ପଢ଼ିଲେ
‘ସୁନା’ଟି ହବୁ ତୁ’ ।
ଟିକ ଚଢ଼େଇରେ
ଶୁଣ୍ ମୋ କଥା
କିଣିଦେବ ତତେ ରେଶମି ଛତା,
ଖାଇବାକୁ ଦେବ ପାଚିଲା ତାଳ
ନାଇବାକୁ ଦେବ ସୁନାର ହାର ।
ତୋ ସାଥିରେ ମୋତେ ବୁଲେଇ ନେ ।
ଘରଟି ତୋହର ଦେଖେଇ ଦେଏ ।
ତୋ ଭଳି ଉଡ଼ିବା ଶିଖେଇ ଦେଏ ।



ଗୁଡ ପାଣ୍ଡୁ ଯବେ ସଫଳ ହବ ।
ଗୁଲେ ବସି କାଉ କା’ ଗାଇବ ।
ବଗିଚ୍ଚ ହୋଇବ ଫୁଲରେ ଭରା ।
ଗୁଲରୁ ଗଡ଼ିବ କଅଁଳ ଖରା
ଖରା ନ ପଡୁଣୁ ଉଠିବ ଯିଏ ।
ତାଁଆ ଭଳି ଆଉ ହୋଇବ କିଏ ? ।



ହାପୁଡୁ, ତାପୁଡୁ, ଧୁଡ଼୍‌ଙ୍କ
କୁକୁଡ଼ାଟି ହେଲା କୁଡ଼୍‌ଙ୍କା ।
ଅଣ୍ଡାରୁ କଲା ଛୁଆ ।
ପାଞ୍ଚଟି ଛୁଆ କୁଲୁବୁ ବୁଲୁ
ଗୋଟିଏ ନେଲା ଭୁଆ ।
ରହିଲେ ଆଉ ଚାରି ।
ବୁଲିଲେ ଘର, ବାରି
ମାଟିଆ ଚିଲ କୋଉଠି ଥିଲା
ଗୋଟିଏ ନେଲା ମାରି ।
ଆଉ ରହିଲେ ତିନି ।
ନାଚିଲେ ଧିନ ଧିନ ।

ଗୋଟିକୁ ନେଲା ଅଜଣା ରୋଗ
ନ ହେଲା ରୋଗ ଚିହ୍ନି ।
ଦୁଇ ରହିଲେ ଆଉ ।
ଗୁହଲ ଖାଉ ଖାଉ ।
ଗୋଟିକୁ ନେଇ କୁଆଡ଼େ କାହିଁ
ପଳାଇ ଗଲ କାଉ ।
ରହିଲା ଜମା ଏକ୍ ।
ଦେଖ୍ ତାକୁ ଦେଖ୍
ଚଉକପରେ ମନ ମଉଜେ
ଖାଉଚ ବସି କେକ୍ ।



ଏକ କେ ଏକ—ପଢ଼୍ ଆଉ ଲେଖ୍
ଏକ ଦୁଣେ ଦୁଇ—ଚୁଆଁ ଆଉ ଚୁଇଁ ।
ଏକ ତର ତନ୍—ବଜାଉ ଥିଲେ ଗିନ ।
ଏକ ଚଉ ଗ୍ୱର—ଖେଳ ହେଲା ସାର
ଏକ ପନ୍ଷ୍ଟ ପାଞ୍ଚ—ଲଗାଇ ଦେଲେ ଅଞ୍ଚ ।
ଏକ ଶୋ ଛଅ—ପିଠା କଲେ ନଅ ।
ଏକ ସତା ସାତ୍—ଧୋଇଲେ ମୁଁହ ହାତ ।
ଏକ ଅଷ୍ଟା ଆଠ—ଖାଇ ପଢ଼ିଲେ ପାଠ ।
ଏକ ନୁଆ ନଅ—ସୁନା ପୁଅ-ଝିଅ ।
ଏକ ଦଶା ଦଶ୍—ସବୁବେଳେ ହସ ହସ୍ ।



# ଶୁଆଇବା

ବହଳ ଶେଯକୁ ଝାଡ଼ିଝୁଡ଼ି ଦେଇ
ବିଛଣା କରିଚି ତୋର ।
ହାଇଟିଏ ମାରି ଆଖିବୁଜି ଦେଇ
ଶୋଇପଡ଼ ଧନ ମୋର ।
ବାଡ଼ି ପଛ ଆଡ଼େ ପିଜୁଳି ଗଛରେ
ଚଢ଼େଇ ଗଲେଣି ଶୋଇ
ତୁ ଏବେ ଶୋଇଲେ କାଲି କିଣି ଦେବି
ତୋ ପାଇଁ ମୁଁ ନୂଆ ବହି ।



ରାତି ଦ ପହର ଜଗୁଆଳି ଡାକେ
"ହୁସିଆର ହୁଅ ଭାଇ" ।
ବଡ଼ଠାରୁ ସାନ ସବୁ ଶୋଇଲେଣି
ତୋ ଆଖିକି ନିଦ ନାହିଁ ?
ତୋହରି ପାଇଁ ମୁଁ ଚେଇଁ ରହିଚିରେ
ନିଦ ବିନା ଆଖି ପୋଡ଼େ
ଝୁଲୁ ହାତ କରି ଝୁଲାଉଚି ତୋତେ
ଶୋଇ ପଡ଼ ମୋର କୋଳେ ।



ଶୋଇ ପଡ଼ ଧନ ଶୋଇ ପଡ଼
କାଲିକି ଯିବୁ ତୁ ମାମୁଁ ଘର
ମାମୁଁ ଘରେ ତୋର ନୂଆ ମାଇଁ
ପିଠା କରୁଥିବେ ସାଇଁ ସାଇଁ
ତୋତେ ଦେଖି ନେବେ କୋଳକରି
ଖୁଆଇବେ ତୋର ପେଟଭରି
ପିନ୍ଧାଇବେ ଜାମା ଜୋତା-ମୋଜା
ଖୁସିହେବେ ଦେଖି ଆଇ, ଅଜା

ଅଜା କହିବେ ମୋ "ସୁନା ନାତି"
ଆଈ କହିବେ ମୋ ପାଟ ହାତୀ ।



"ଆଷାଢ଼ ମାସରେ ଫୁଟଇ କଥା
ଶୋଇ ନ ପଡ଼ି ତୁ ଚେଇଁଚୁ କିଆଁ ?
ଲୁହ ବହି ଆଖି ଗଲାଣି ଫୁଲି
ଗୋଲ ମୁହଁ ପଡ଼ି ଗଲାଣି ନାଲି ।
ତୁନି ହୁଅ ଏବେ କହିବି କଥା
ଶୁଣି ବୁଜି ଦବୁ ତୋ ଆଖି ପତା ।"



ଜହ୍ନ ମାଉସୀ ଲୋ ଜହ୍ନ ମାଉସୀ
ମୋ ପୁଅ ପିଠିକି ଦେଏ ଆଉଁସି ।
ତୋ କଅଁଳ ହାତ ଆଉଁସା ପାଇ
ଲୁନୁମୁନ୍ ମୋର ପଡ଼ିବ ଶୋଇ ।
ଶୋଇ ପଡ଼ିଲେ ତୁ ଦେଖିବୁ ରହି
କେଡ଼େ ସୁନ୍ଦର ତା ଦିଶିବ ମୁହଁ ।
ସେତେବେଳେ ଯେବେ ଦେବ ସେ ହସି
ସରଗ-ଶଶୀ କି ପଡ଼ିବ ଖସି ।



ଜହ୍ନ ମାଉସୀ ତୁ ଆ' ଲୋ ଆ'
ମୋ ପୁଅ ଆଖିରେ ନିଦ ଦେଇଯା ।
ତତେ ମୁଁ ଦେବିଟି ନଡ଼ିଆ ଫାଳ
ଆତ-ଆମ୍ବ-ଜାମୁ-ପଣସ-ତାଳ ।
ଖାଇବୁ ପିଇବୁ ଆମରି ଘରେ
ତୁ ଆସିଲେ ପୁଅ ଶୋଇବ ବଳେ ।
ଶୋଇଗଲେ ସିଏ ନ କରି ଡେରି
ସୁଖେ ଚାଲିଯିବୁ ଘରକୁ ଫେରି ।



ଆ'ଲୋ ମାଆ ତୁ ପୁଅକୁ ନେଏ
ଗେଲକରି ଆଗେ କାଖେଇ ଦେଏ ।

ବୁଲେଇ ବୁଲେଇ ଖୁଆଇ ଦେଏ
ଝୁଲେଇ ଝୁଲେଇ ଶୁଆଇ ଦେଏ ।
ପୁଅ ମୋ'ର ଯେବେ ପଢ଼ିବ ଶୋଇ
ତୁ ଉଠି ଯିବୁ ସକାଳ ହୋଇ ।
ଭାତ, ଡାଲି-ଶାଗ, ଭଜା ରାନ୍ଧିବୁ
ଖାଇବାକୁ ଆମ ସବୁଙ୍କୁ ଦେବୁ ।
ଉଛୁର ହୋଇଲେ ଉଠିବ ପୁଅ
ତୋତେ ନଦେଖି ସେ ଢାଳିବ ଲୁହ ।



ଶୋଇପଡ଼ ଆରେ ଧନଟି ମୋର
ବାପା ଯାଇଛନ୍ତି ଭୁବନେଶ୍ୱର ।
ତୋ ପାଇଁ ଆଣିବେ କୋରା ଉଖୁଡ଼ା
ମଗଜଲଡ଼ୁରୁ ଗୋଟିଏ ପୁଡ଼ା ।
ପୁଡ଼ା ଫିଟାଇ ତୁ ଦେଖିବୁ ସବୁ
ନଜୋଁ ତୁ ଖାଇବୁ ଭାଇକୁ ଦବୁ ।



ନଡ଼ିଆ ଗଛର ଗୁଇ
ଝୁଲେଇ ଝୁଲେଇ ଥକି ଗଲିଣି ମୁଁ
ତୋ ଆଖିରେ ନିଦ ନାହିଁ ।
ନିଦୁଆ ବୁଢ଼ା ତୁ ଆ'ରେ ଆ
ନିଦ ଗୀତଟିଏ ଗାଆରେ ଗାଆ ।
କୁନା ମୋ' ପଡୁ ଢୁଲେଇ
ପାକଳ ନିଦରେ ଶୋଇଗଲେ ସିଏ
ଯିବୁଟି ତୁନ୍ଦୁ ପକେଇ ।



ନିଦ ମାଉସୀ ଲୋ ନିଦ ମାଉସୀ
ନିଦ ଝୁଡ଼ି ଦେଏ ଏଇଠି ଥୋଇ
ଝୁଡ଼ିଟି ଫିଟେଇ ଦେଖିଲେ 'ଜଗୁ'
ହାଇଟିଏ ମାରି ପଡ଼ିବ ଶୋଇ ।

ଘୁଙ୍ଗୁଡ଼ି ମାରେ ସେ ଘୁଡ଼ୁରୁ ଘୁଡ଼ୁ
ପାଣିରେ ହୁଏ ସେ କୁଡ଼ୁରୁ ବୁଡ଼ୁ ।
ନାକଟିକୁ କରେ ସୁଡ଼ୁରୁ ସୁଡ଼ୁ
ଡବା ଖୋଲି କରେ ଖୁଡ଼ୁରୁ ଖୁଡ଼ୁ ।
ବାଦାମ ଚୋବାଏ ମୁଡ଼ୁରୁ ମୁଡ଼ୁ
ଗୁଡ ଭା'ର ହୁଏ ଧୁଡ଼ୁରୁ ଧୁଡ଼ୁ ।
ବିଲେଇ ଗୋଟିଏ ଦେଖିଲେ କାହିଁ ।
ଜହ ମାଉସୀ ଲୋ ଜହ ମାଉସୀ
ଜହ ଙ୍ଗୁଡ଼ି ଦେଏ ଏଇଠି ଥୋଇ ।



ଖାଇବାକୁ ଦେବି ଅଙ୍ଗୁର କୋଳି
ଝୁଲେଇ ଦେବି ମୁଁ ପାଟର ଦୋଳି ।
"ଜଜମନ ଗୀତ" ଦେବଟି ବୋଲି
ତୋଳିବି ତୋ ପାଇଁ ପାଚିଲକୋଳି ।
ସ୍ୱପ୍ନଟିଏ ପରି ହସି ହସିକା
ଶୋଇ ପଡ଼ ମୋର ସୁନା ଝଡ଼ିଭା ।
ଜୁଳ ଜୁଳ ଆଖି ଦେଏ ରୁ ବୁଜି
ଉଠିଲେ ଖାଇବୁ ବୁଦ୍ଧିଆ ପୁଜି ।



ଛିଗ୍ରବଣ ମେଘ ଅଇଲା
ସୁଲୁ ସୁଲୁ ବାଆ ବହିଲା ।
ଟୁପୁ ଟୁପୁ ଟୋପା ପଇଲା
ବାହାରର ଖେଳ ସଇଲା ।
ଘର କଥା ମନେ ପଇଲା
ଜୁନ୍ ମୁନ୍ ମୋର ଧାଇଁଲା ।
ଛତ-ଢାଲି ଭଜା ଖାଇଲା
ଜଦୋଡ଼ ଜଦରେ ଶୋଇଲା ।



ଜନ ଶୋଇଲାଣି ପକ୍ଷି ଶୋଇଲାଣି
ଶୋଇଲାଣି ଟିକି ଜହ୍ନା ।
ନିଦବଦ ଗୁଡ଼ ତୋ ଆଖିକି କାହିଁ
ନିଦ ଆସୁନାହିଁ ଜମା ?
ମାଣିକ ମାଳରେ ଶୋଇଯା ମୋର
ଗୁଡ଼ ପାହିଗଲେ ହୋଇବ ଭୋର ।
ସୂରୁଯ ଦେବତା ଆସିଲେ ଉଇଁ
ଶେଯ ଛାଡ଼ିଦେଇ ଉଠିବୁ ତୁହି ।



ମାଡ଼ ଆସିଲାଣି ବତାସ ଝଡ଼
ଅଝଟ ନହୋଇ ଶୋଇ ତୁ ପଡ଼ ।
ନଶୋଇ ଯେବେ ତୁ ରହିବୁ ଗୁହିଁ
ଖେଳନା ତୋ ପାଇଁ ଦେବେନି ଆଉ ।
ଅଜା ମଜାଗପ କହିବେ ନାହିଁ
କାଖ କରିବେନି ତୋ ବଡ଼ଭାଇ ।
ବାପା ଆଣିବେନି ଲଡ଼ୁ, ତୋ ଲାଗି
କାନ ମୋଡ଼ିଦେବ 'ଅପା' ତୋ ରାଗି ।
ନେବେ ନାହିଁ ଦାଦା ଡକେ ବୁଲେଇ
ଝୁଲି ଦେଲେ ନାହିଁ ଦୋଳି ଝୁଲେଇ ।



କାଉରେ କାଉ !
ଖେଳି ଖେଳି ପୁଅ ପଡ଼ିଣି ଶୋଇ
ଉଠି ପଡ଼ିବ ତୁ ବୋବାନା ଆଉ ।
କାଉରେ କାଉ ।
ଚୁପ ହୋଇ ଯେବେ ରହିବୁ ବସି
ଖାଇବାକୁ ତତେ ଦେବି ମୁଁ ଯାଉ
କାଉରେ କାଉ ।
ଗାଉ ଗାଉ ହୋଇ ବୋବୋଉ ଥାଉ
କହିଲୁ ଏଥିରେ କି ସୁଖ ପାଉ ?



ଜଆଁ ଭଳି ଧନ ଝଗ୍ର କାଚୁଚରେ
ଗୁଣ୍ଡି ଗୁଣ୍ଡି ଖଗ୍ରଦେଲେ ।
ଝାଳରେ ଗାଧୋଇ ହାଲିଆ ହେଲୁଣି
ସେତକ ଥାଉ ତୋ ଖେଳ ।
ଆ ଶୋଇପଡ଼ କୋଳରେ ମୋହର
ବସି ମୁଁ ଦଉଚ ତୋତେ ।
ମୋ ପୁଅର ଦନ୍ତ ଖଗ୍ର ଧାସରେ ଲେ
ସିଝି କ ଯାଉଛୁ ସତେ ।
ଶୋଇପଡ ଧନ ଝଗ୍ର ମଉଳଲେ
ଡାକଲେ ଉଠିବୁ ଯାଇ ।
ଖାଇ ପିଇ ସାଣ ସ୍ତଇଦ ସାଥିରେ
ଖେଳିବୁ ବାହରେ ଯାଇ ।



ଯା ଚୁଆଁ ଚୁଇଁ ଯାଆ
ଆମ କୁନୁମୁନ୍ ଶୋଇ ପଡ଼ିଲାଣି
ତମ ଘରେ ରହୁଆଆ ।
ଆମ କୁନ୍‌ମୁନ୍ ସୁନା ପୁଅଟି
ଉଠିଲେ ତୁମ ପାଖକୁ ଯିବ ।
ସାଙ୍ଗ ସାଥି ହୋଇ ସଭିଏ ମିଶି
ଫେଲନା ସବୁକୁ ଧଣ ଖେଳିବ ।



ଦହକୁ ଥପ୍ରିଏ ଶୀତ ।
ଦୋଡ଼ପୁଡ଼ ହୋଇ ଶୋଇପଡ଼ କୁନ
ଗାଇ ଦହୁଚ ମୁଁ ଗୀତ ।
ପାଚିଲା ଧାନର ଢଳ
ତାଙ୍କ ଘର ପୁଅ ଶୋଇଲାନ ବୋଲି
ତାକୁ ନେଇଗଲା ଚଲ ।
ଶାସର ପଡ଼ଣା ଶୁଆ
ଯେ ଗାଆଁର ଝିଅ ଶୋଇଲାନ ବୋଲି
ତାକୁ ନେଇଗଲା ଭୁଆ ।



ଶୋଇ ପଡ଼ିଲଣି କୁଆ ବଉଳଗଛି
ଶୋଇଲେଣି ଗଛ ଲତା ।
କୁନ୍‌ମୁନ୍ ମୋର ଶୋଇପଡ଼ ତୁହି
ବୁଜ ଦେଇ ଆଖି ପତା ।
ଶୋଇପଡ ମୋର ଗଳାର ମାଳରେ
କଷା ହଣିଲଣି ଆଖି ।
ରାତି ବେଶି ହେଲେ କଆ ବୁଦାମୂଳେ
ବଲୁଆ ଉଠିବେ ଭୁକି ।
ଆମ ବାଡ଼ିପଟ ପିଜୁଳି ଗଛରେ
ବାଦୁଡ଼ି ଖେଳିବେ ଦୋଳି ।
କଥା ମାନ ଯେବେ ଶୋଇ ପଡ଼ିବୁରୁ
କାଲି ଆଣିଦେବି କୋଳି ।



ଗାଆଁ ପିଲାଙ୍କର ମଉଡ଼ମଣି
ହୀରା, ନୀଳା, ମଣି, ମାଣିକ ଖଣି
ଚଞ୍ଚଳ ଯାଆରୁ ଶୋଇ
ସବୁକାମ ଯାକ ପଛରେ ପକାଇ
ତତେ ଶୁଆଉଚ ମୁହିଁ ।
ଖଟି ଖଟି ତୋ'ର ବାପା ଆସୁଥିବେ
ଖାଇବେ ସେ ଜଳଖିଆ
ଇସ୍କୁଲୁ ଫେରି ନ ଖାଇଲେ ଭାତ
ପେଟ ହୋଇଯିବ ନଆଁ ।
ଅପା ତ ତୋହର ଛଅ ବରଷର
କାମ କରି ଜାଣିନାହିଁ ।
କେବେ ତାଙ୍କ କଥା ବୁଝିବ ଧନରେ ·
ମତେ ନ ଛାଡ଼ିଲେ ତୁହି ।



## ଖେଳ—

ଦୀପାବଳି ଘରପାଖେ କଣା ହେଲା ଫଟକା
ଠୋ ଠା ଫୁଟିଲାରେ କୁନା ହେଲା ଚାଟକା ।
ଢ କାନରେ ହାତ ଦେଇ କୁନ ଗଲା ପଳେଇ ।
କେକେ ମା କୋଳରେ ବସି ହେଲା ଖୁସି ଗେହ୍ଲେଇ ।
(ତାଳି ମାରିଦେଲେ ଜଣେ କାନରେ ହାତଦେଇ
ଦଉଡ଼ି ଯାଇ ଆଉ ଜଣକ କୋଳରେ ବସି ପଡ଼ିବା)



ଆଖି ନାହୁ, କାନ ନାହିଁ ।
ମୁଁ କହୁଦେବ ସାଙ୍ଗ କାହିଁ ?
[ଗୋଟିଏ ପିଲା ଆଖିରେ ପଟି ବାନ୍ଧି ଏଇ ଗୀତ ଗାଇ
ଅନ୍ୟକୁ ଧରିବାକୁ ଯିବା)



ଖେଳେଇ ଦେଇ ମୁଁ ଗଦାଏ ବାଲି
ତୋ କାଠି ଗୋଟିକ ଆଣିବ କାଢ଼ି ।
କାଠି ଗୋଟିକ ମୋ'ର
ବାଲି ଗଦାକ ତୋର
(ଜାଣେ ବାଲି ଭିତରେ କାଠି ଲୁଚେଇବ ଆଉ ଜଣେ
ତାକୁ ଖୋଜି କାଢ଼ୁ କାଢ଼ୁ ଏ ଗୀତ ଗାଉଥିବ)



ଦନେଇ' ମନେଇ, ଦୁଇଟି ଭାଇ
ମାଛ ମାରିଗଲେ ପୋଲୁହ ନେଇ
ଶେଉଳ, ଖଙ୍କୁର ଗେଣ୍ଡୁ ଧଇଲେ
ଜାଲରେ ପୁରେଇ ବୋହୁ ଆଣିଲେ ।
(୨ । ୩ ଟି ପିଲାକୁ ଆଉ ଦୁଇଟି ପିଲା
ହାତ ମଝିରେ ରଖି ଧରି ଧରି ଆଣିବା ଖେଳ)



ଅକଲ, ମକଲ, ଝକଲ ଝାଉଁ ।
ବଉଳ ଗଛର କହ୍ନଲ ଗୁଇ ।
ଗୁଇରେ ଛପର ତାର ।
ଭୂଷି ପଳଉଚ ଛହକା ଭୂଆ
ଧର, ଧର ତାକୁ ଧର ।
(ଗୋଟିଏ ପିଲା ବୁଲି ପଳେଇବା ଓ ଅନ୍ୟ ମାନେ
ତା'କୁ ଦୁଟେଇ ଧଣ ଆଣିବାର ଅଭିନୟ )



"କଆ କନ୍ଦଅର ଫୁଲର ତୋଡ଼ା ।
ଆ'ରେ ଆ'ରେ କାଳିଆ ଘୋଡା ।
ତୋ ଉପରେ ମୁଁ ବସିବ ।
ଟପ୍ ଟପ୍, ଟପ୍ ନ ଦଉଡ଼ିଲେ ତୁ
ଗୃବୁକ୍ ପାହାର କଷିବ ।
(ଗୋଟିଏ ପିଲା ଆଣ୍ଠେଇ ଘୋଡ଼ା ହୋଇଥିବ
ଆଉ ଗୋଟିଏ ପିଲା ତା ଉପରେ ବସି ଏହି
ଗୀତ ଗାଉଥିବ )



ଜଣେ— ଅକଲ ମକଲ, ତାକୁଡ଼
ବାଶରେ ଫଳିଚ କାକୁଡ଼ ।
କାକୁଡ଼ ଦୁଇଟି ନେ'ରେ ଭାଇ
କାକୁଡ଼ ଦୁଇଟି ନେ ।
ଦେଖିବା ଦେଖି କେମିତ ଧରବୁ ?
ଆଉଜଣେ—"ହାତକୁ ପକେଇ ଦେ'
(ଏହାକୁ କାକୁଡ଼ ଖେଳ କୁହାଯିବ । ଜଣେ
ଗୀତ ଗାଇ କାଠି, କ ଗୁଲ୍ କ ଗୋଡ଼କୁ
ନେବା ପାଇଁ ଯାଚବ ଏବଂ ଅନ୍ୟ ଜଣକ ହାତକୁ
ପକେଇ ଦେ କହିଲେ ତା ହାତକୁ ପକେଇ ଦବ । )



ଆମ ଗଛକୁ ଖାଇ ଦେଲା
ପଡ଼ଶାଘର ଗାଈ ।

ଧରିବା ପାଇଁ ଗୋଡ଼େଇଲାରୁ
ପଳେଇ ଗଲା ଧାଇଁ ।

(୬-୭ ଜଣ ପିଲା ହାତ ଧରା ଧରି ହୋଇ ଗୋଲେଇ ହୋଇ ଠିଆ ହେବେ । ଜଣେ ପିଲା ସେଇ ଗୋଲେଇ ଭିତରେ ପଶି ଟିକିଏ ବୁଲି ତା ପରେ ଡେଇଁ ପଳେଇ ଯିବ । ତା ପଛରେ ସମସ୍ତେ ଗୋଡ଼େଇବେ । )



## କୌତୁକ ଗୀତ—

ଆର ସାଇ ପିଲ 'ଧଡ଼ିଆ'
ଖିର ଭଲ ପାଏ ନଡ଼ିଆ ।
ଦ୍ୱିଚଣ୍ଡା ନଡ଼ିଆ ଖାଇଲେ ବି ତା'ର
ପୁରେ ନାହିଁ ପେଟ-ଗଡ଼ିଆ ।
ଲୋଭ କରି ଖାଇ ରାତିରେ ନ ଶୋଇ
ଧାଇଁ ଥାଏ ଖାଲି ପଡ଼ିଆ ।



ଜେଜେ ଗଲାବେଳେ ବଜାରକୁ ବୁଲି
'ଜିରୁ' କହେ ଟା ଟା ।
ଘରକୁ ଫେରିଲେ ଜେଜେ କହନ୍ତି ରୁ
ଚକଲେଟ୍ ନେ' ଖା" ।
ସଭିଏଁ ଦିଅନ୍ତି ହସି ।
ଦେଖିଲା ବେଳକୁ ଜେଜଙ୍କ କାଖରେ
'ଜିରୁ' ପଡ଼ିଲାଣି ବସି ।



ସାରୁ ଅଳୁ ଦୁହେଁ କରିଲେ ଭଳି ।
ହାଟଟାରେ ହେଲେ ଗଡ଼ା ଗଡ଼ି ।
ଭଲ ଲୋକ ହେଲେ କଖାରୁ ଲାଉ ।
ବାଇଗଣ ଆସି ମିଳାଇଲ କାହୁଁ ।
ଶିମ, ବରଗଡ଼ା, ବନ୍, ବାଲଢ
ହାଜର ହୋଇଲା ଗାଜର ଆସି ।

ପଢୁଥିଲେ ପାଣିକଣାରୁ, ମୂଳ
ଶେଷକୁ ପଡ଼ିଲା ଧରମ ଗୁଳା ।
ଯାଣ୍ଡ ଛଅଙ୍କୁ ପଇଡା ପାଇଁ ।
ଯାଇଥିଲା ମୂନା ହାଟକୁ ଧାଇଁ ।
ଦେଖିଲା ଲଗିଚ ପଇଡା ଭଳି ।
ସଭଙ୍କୁ ଧଇଲା-ଚୁଡ଼ିଲା ଅଳୀ ।
ଆମର ପୁଅ ଗୁରୁଙ୍କ ଅଛ
'ଖାଲୁଆ' ତା'ର ସ୍ୱଟ ।
ଭୁଲିଲେ ସିଏ କହୁଚ ପୁଅ
ଶୁଣରେ ସବୁ
ଖାଲୁଆ ପଢ଼େ ପାଠ
ସ୍କୁଲ ଦଗୁଣେ ଆଠ ।
ପଢ଼ି ସାରିଲେ ପୁଙ୍ଗୁ ର ନାଇ
କରିବ ସିଏ ନାଟ ।



ଡାକ୍ତର ହୋଇ ଜେଜଙ୍କୁ ବସେଇ
'ଜ୍ୱର' ଦେଖି ତାଙ୍କ ନାଡ଼ି ।
"ବଟିକା ଖାଅଟି" କହି ଦେଲା ତାଙ୍କୁ
ପଟିକ୍ସ ଦ'ଟା କାଢ଼ି ।
ମାଆଙ୍କୁ କହିଲା ଯାଇ
ଡେଇ ଆଉ କର ନାହିଁ ।
ଜେଜେଙ୍କର ପଥି କରିଦିଅ ତୁମେ
ଖାସି ମାଉଁସର ଝୋଳ ।
"ସାବାସ ଡାକ୍ତର" କହି ଜେଜେମା'ଙ୍କୁ
ହସି ହସି କଲେ କୋଳ ।



ଜଟିଆ ଚୁଟିଆ ବସ୍ତିର କଲେ
ସାଥି ହୋଇ ଦନେ ହାଟକୁ ଗଲେ
ଜଟିଆ କଣିଲା ବସ୍ତି ।

ବସ୍ତକୁ ଛଡ଼େଇ ଚୁହିଆ ଖାଇଲା
ଦୁହେଁ ହେଲେ ଧସ୍ତ ପସ୍ତ ।



ବିଲେଇ ନାମର ବିଲୁଆ ମିତ ।
ଦୁହେଁ ଯାକ ବନେ ଗାଇଲେ ଗୀତ ।
ନାଚିଲେ ଡେଇଁଲେ ଥରିଲା ଭୁଇଁ
ଭାଲୁ ଖାଉଥିଲା ହରଡ଼ ଛୁଇଁ ।
ଚମକି କହିଲା କିଏରେ ତୁମେ
ବିଲେଇ ବିଲୁଆ କହିଲେ "ଆମେ"



ଦାସଙ୍କ ବାଗରେ କଦଳୀ ପୁଆ
ଦାସେ ପୋଷିଥିଲେ ମାଙ୍କଡ଼ ଛୁଆ ।
ନାଁ । ଦେଇଥିଲେ ଶଙ୍କଆଁ
"ଶଙ୍କଆ"କୁ ଦେଖି ଦାସଙ୍କର ନାତି
ହୋଇଗଲା ଖୁସି ଗୁନଆଁ ।



ଜେଜେ ଆଣିଦେଲେ ଖେଳନା ବନ୍ଧୁକ
'ଲୁନା' ତା'କୁ କଲା ଠୋ'
ମାଛଯାକ ସବୁ ଉଡ଼ି ପଳେଇଲେ
ଜେଜେ ହସିଦେଲେ ହୋଓ ।
କହିଲେ "ଲୁନା"ରେ ବଡ଼ ଦନକୁ ରୁ
ହବୁ ଯେବେ ଗୋଟେ ବୀର ।
ଆଜଠାରୁ ଖାଆ ମାଛ, ମାଂସ, ଫଳ
ପିଇ ପେଟେ, ପେଟେ କ୍ଷୀର ।



ଏକ୍, ଦୁଇ, ତିନ୍
ଭାଲୁ ବଜାଏ ଗିନି ।
ଚୁହିଆ ମୂଷା ପଇସା ଦେଇ ଟିକେଟ୍ ନିଏ କିଣି ।
ହଉଛି ସର୍କସ୍
ହନୁଟି ସେଠି ଚଉକିଦାର କହୁଛି ବସବସ୍ ।



ହାପାଇ, ଡାପାଇ, ଦୁଇଟି ଭାଇ
ବଜାରକୁ ଗଲେ ପରିବା ପାଇଁ ।
ହାପାଇ କିଣିଲା ଆଳୁ ବାଇଗଣ
ଡାପାଇ କିଣିଲା ପୋଇ ।
ଅଧାବାଟ ଆସି ଘୁମେଇଲେ ବସି
ସବୁ ଖାଇଦେଲା ଗାଈ ।



ମୋ ଝୁମା ନାଚବ ଘୁଙ୍ଗୁର ନାଇଁ ନେ
ଜେଜେ ବଜେଇବେ ଗିନି ।
ଜେଜେମା ବସିବେ ସିତାର ଧରିନେ
ଗୀତଟି ଗାଇବ ମିନି ।



ଖଟ ଉପରେ ମଶାରି ଟାଣି
ଘୁଙ୍ଗୁଡ଼ି ମାରେ 'ବିଲେଇ' ନାନୀ
ପାଖରେ ବସିଛି 'ବିଲୁଆ' ଅଜା
ଓଧ କରୁଛି ଶେହ୍ଲ ଭଜା ।
ଉଠିଲେ 'ନାନୀ' ଖାଇବ ଭାତ
ଦେଖିବାକୁ ଯିବ ମକର ଯାତ ।



ଲେଉଟାଣି ଖରା ସୁନା ଜଳଝଳେ
ମଥାନରେ ଶୋଇଗଲା
ମୂଷା ଦେଉଥିଲା ହୁଲଙ୍ଘା ଲଗେଇ
ବିଲେଇ ଗାଧୋଉଥିଲା ।
ବିଲେଇ ନାକରେ ଫୁଲ
ବଗ କରିଥିଲା ମାଛର ବେପାର
ଚିଲ କରୁଥିଲା ମୂଲ ।



ଦାଦା ଦେଲେ ଡଣ ଚକଥା ଗାଡ଼ି
'ଝରୁ' ଚଢ଼ିଗଲା ଆଗରୁ ମାଡ଼ି ।

ଗାଈ ଗଡ଼ଯାଏ ଘୁର୍ ଘୁର୍
ଜରୁ ହସିଦଏ ଝୁର୍‌ଝୁର୍ ।
ଢେଲ୍ ମାରୁଥାଏ କପି
ପଛେ ବସି ତାର ଟିକ ଭଉଣୀଟି
ଗୀତ ଗାଉଥାଏ ହସି ।



ଝଲେଇ ବଜାଏ ଯୋଡ଼ି ନାଗରା
ମୂଷା ନାଚେ ପିନ୍ଧି ନାଲି ଘାଗରା ।
ଘାଗରା ଢଙ୍ଗରେ ଜଉର ଫୁଲ୍ ।
କାଠଯୋଡ଼ି ନଈ ଖାଉଚି ଢୁଲ
ନଈ ପାରି ପାଇଁ ଟିଲୁଆ ନନା
ନାଆରେ ବସିଚି ଅନାରେ ଅନା ।



ମୂଷା ଯାଉଥିଲା କଟକ ବୁଲି
ବସ୍‌ରୁ ଓହ୍ଲେଇ ଡ଼ାକିଲା 'କୁଲି'
ଆସିଗଲା କୁଲି କାଳିଆ 'ଭୂଆ
ମୂଷା କହିଲା ମୁଁ ମଲିଲେ ମାଆ ।
କୁଲି ଆସିବା ମୋ ସେଠକୁ ଥାଉ
ଆସିବ ନାହିଁ ମୁଁ କଟକ ଆଉ ।



ଅଠା ଝାଲୁବାଲୁ ପଣସ କସି
ହନୁ ଖିଲୁଅଛୁ ପରବା ବସି ।
ନେଉଳ ଧଇଚି ଅଖାର ଝୁଲି
କଣ୍ଟିଚି ଉଖାରୁ, କଦଳୀ ମୂଳା ।
କୋବି, ବାଇଗଣ, କଲରା, ସାରୁ
ଗାଜର, ପିଆଜ, ରସୁଣ, ଆଳୁ
ଦେଖି ଯାଉଥାନ୍ତା ଟେନିସ୍ ଖେଳ
ପରବା ଝିଅରେ ଗଲା ତା ବେଳ ।



କାଟିଗଲ ସବୁ ସୂତା
ବରଷାରେ ବଗ ବନ୍ସୀ ପକାଏ ।
ବଗୁଲି ଧରନ୍ତି ଛତା ।
ମାଛ ଭାତ ଯେବେ ନଖାଏ ବଗୁଲି
ବସିଯାଏ ରାଗୀ ରୁଷି ।
ବଗ ବ ସେଦନ ଉପାସରେ ରହେ
ସବୁତକ ଖାଏ 'ପୁଷି' ।



ବଲୁଆ ପୁଅ ଜନମ ଦନ ହେଉଚ ବଡ ଭୋଜ
ଉଅଣ ପାଇଁ କଙ୍କଡ଼ା ଶହେ ଆଣିଚ ସିଏ ଖୋଜ ।
ଗୁଣିଚ ମଣ୍ଡା, କାକରା ବରା
କଣିଚ ଲଡୁ, ଜିଲପି କୋରା
ମହାନଦୀର ଇଲିସି ମାଛ ରଖିଚ ପୁଣି ଭାଜ
ବଲୁଆ ପୁଅ ଜନମ ଦନ ହେଉଚ ବଡ଼ ଭୋଜ ।



କାଉ ଡାକେ କା କା କୋଇଲି ଡାକେ 'କୁ'
କୁଆର କୁଆ ପାଟିରେ ଧରି ଭୂଆ କରିଲି କୁ ।
ଭୂଆର ପଛେ ଭାଲୁଆ ଧାଏଁ ଏଡେ ଆଁ ଟେ କରି
ତା ପଛକୁ ଟିକ ବାକୁଲି-ଦେକଟରେ ପଘା ଧରି ।
ବାକୁଲି ପଛେ ଆମର "ହରି" ବାଡ଼ଟା ଧରି ଧାଏଁ
ଜାଉ ଆମର ସେଇମାନଙ୍କୁ ଝରକା ବାଟେ ଚାହେଁ ।



ଡାଳେ ଝୁଲେ ଜାମୁ କଷି ।
ମୂଷା ନାଚୁଅଛନ୍ତି ଝୁମ୍‌କୁ ଝୁମା ଲେ
ବିଲେଇ ଦେଖୁଚ ବସି ।
ବିଲେଇ ନାକରେ ଫୁଲ
ବଲୁଆ, କୁକୁର ଦୁଇଦଳ ହୋଇ
ଖେଳୁଛନ୍ତି ଫୁଟ୍‌ବଲ ।
ବାଗୁଡ଼ି ଖେଳନ୍ତି ଭାଲୁ
ଲୁହା ଜାଲି ତଳେ ବାଘ କୁଆ ସବୁ
ହେଉଛନ୍ତି କାଲୁ ବାଲୁ ।



ବଉଳ ଗଛର ବହଳ ଛାଇ
ହଳ ବୁଲଉଚି ଗଧିଆ ଭାଇ ।
ଗଧିଆ ଭାଇର ମୁଣ୍ଡରେ ଠେକା
ଯୋଚି ଦେଇଚି ସେ ଦୁଇଟା ହେଟା ।
ବଇଶାଖ ମାସ ଟାଣୁଆ ଖରା
ଦେଖି ଯାଇଥାନ୍ତେ ଝାମୁ ଯାତରା ।
ପିଇଥାନ୍ତେ ଅଣ୍ଟା 'ଲସି'
ଦିପହର ବେଳେ ଝାଳ ମାରିଥାନ୍ତେ
ଛାମୁଡ଼ିଆ ତଳେ ବସି ।



ଘୁଁ ଘୁଁ ଘୁଲେ ଗାଡ଼ି-ଚାଲି ସଡ଼କ ମାଡ଼ି
ପାଖେଇ ଯାଅ-ପାଖେଇ ଯାଅ-ହାଟ ତାକୁ ଦିଅ ଛାଡ଼ି ।
ବେଙ୍ଗ ବେଙ୍ଗୁଲି ବର କନିଆ
ଗାଡ଼ି ଭିତରେ ବସି
ଜରି ଫୁଲିଆ ମକୁଟ ନାଇ
ହସନ୍ତି ହସା ହସି ।
ଚନ୍ଦିଆ ହାତେ ଚୂଡ଼ି
ବର ପାଖରେ ଥୁଆ ହୋଇଚି
ଝଡ଼ି ପୋକର ଝୁଡ଼ି ।



ମୂଷା ଯାଉଥିଲା ହାଟକୁ
ମୂଷି ଚାହିଁଥିଲା ବାଟକୁ ।
କିଆବୁଦା ମୂଳେ ନଅର, ପସର
ଦେଖ ନେଉଳର ନାଟକୁ ।
ନେଉଳର ପୁଅ ଗୁକସି କରୁଚି
ଚଢ଼ୁଚି ମଟର ଗାଡ଼ି ।
ନେଉଳୀ ପଡ଼ିଚି ଜର ବାଧକାରେ
ବିଲୁଆ ଦେଖୁଚି ନାଡ଼ି ।



ପୋଖରୀ କୂଳରେ ଇସ୍କୁଲଟିଏ
ଖୋଲିଥିଲା ବୁଢ଼ା ବଗ ।
ଫୁଟପିଲା ହୋଇ ଖାତା, ବହି ନେଇ
ପାଠ ପଢ଼ୁଥିଲେ ବେଙ୍ଗ
ଶଶୁର ଘରକୁ ଯାଉଥିଲା ଥରେ
ସାପ ସେଇବାଟ ଦେଇ ।
ଅ, ଆ, ଇ ଶବଦକୁ ଶୁଣି
ଦେଲା ସେ ଆଡ଼କୁ ଚାହିଁ ।
ବାପାଲୋ' ମାଆଲୋ କହି ।
ତାକୁ ଦେଖି ବେଙ୍ଗ ପଢ଼ା ଛାଡ଼ିଦେଇ
ପାଣିକି ପଳିଲେ ଡେଇଁ ।



ଛୁଲି ଦେଖୁ ଦେଖୁ ସିନେମା ଘରେ
ଛବିରେ ଦେଖିଲା ବାଘ
"ଅରମେ" ଡାକି କହିଲା ସିଏ
କବାଟ ଫିଟାଅ ଆଗ ।
ବାଘ ଆଁ ଦେଖି ମାଡ଼ୁଛି ଡର
ପଳେଇ ଯିବି ମୁଁ ଧାଇଁ ।
କାନ, ନାକ ମୋଡ଼ି ହେଉଛି
ଆଉ ସିନେମା ଦେଖିବି ନାହିଁ



ପାଚିଲା ଧାନ ବିଲ ।
ଧାନ କାଟୁଛି ଚିଲ ।
ବୋହି ନେଉଛି କାଉ ।
ବଣି ଚଢ଼େଇ ଖେପେଇ କରେ
ଖତ ହେଲାଣି କାଉ ।
'ଖଲୁଆ ନନା'ର ପାଚିଲା ଦାଢି ।
ଖାଇ ବସିଛି ସେ ଚକ୍‌କା ପାଉ ।
କାଉ ଫୁଟୁଛି ଚଟା ଚଟ୍
କହୁଛି ଦଅ ପଟା ପଟ୍ ।



ବଇଶାଖ ମାସେ ପଣସ ପାଚେ
ତାକ୍ ଧିନା ଧିନ ଗଧିଆ ନାଚେ ।
ଗୋଡ଼ରେ ତାହାର ଘୁଙ୍ଗୁରର ମାଳ
ବାଜା ସାଙ୍ଗେ ହାଙ୍ଗେ ପକାଏ ତାଳ ।
ମହୁରି ବଜାଏ ଭାଲୁର ବେଟା ।
ଢୋଲକି ପିଟୁଚି କଣୁଆ ହେଟା ।
ଚାଲିଚି ହସ ଖୁସି ।
ଗରମ୍ ଚାନା, ବାଦାମ ଭଜା
ବିକୁଚି ଭୁଲି ଭୁସି



ବିଲୁଆ ଯାଏ ଶିକାର କରି ଗୁଳି ବନ୍ଧୁକ ନେଇ ।
ଶିକାରି ବେଶ ବଢ଼ିଆ ଦିଶେ ଦେଖରେ ଦେଖ ଭାଇ ।
ବାଟରେ ତା'କୁ କୁକୁର ଦେଖି କରିଲା ଏଡ଼େ ଆଁ ।
ରଡ଼ରେ ତା'ର ବିଲୁଆ ମଥା ହୋଇଲା ଘାଁ ଘାଁ ।
ଫୋପାଡ଼ି ଦେଇ ବନ୍ଧୁକ' ଗୁଳି କରିଲା ସିଏ ଛୁ ।
ପଛରୁ ଥାଇ ଡାକିଲା 'ଜରୁ' ବିଲୁଆ ! ତୁଉ ତୁ-ଉ-



ବଣ ବଗୁଲି ଦୁହେଁ
କହିଲେ ଆମ୍ଭେ ଆମିଷ ଆଉ
ଦଗୁନ ଜମା ମୁହେଁ ।
ଆଜଠୁ ହବୁ ବାବାଜୀ ମାତା,
ଜପିବୁ ନାମ-କାଟିବୁ ଚିତା ।
ତୁଳସୀ ମାଳ ନାଇବୁ ପୁଣି-ଏକଥା ମିଛନୁହେଁ ।
ହସିଲା ଶୁଣି କାଉ ।
କହିଲା ତେବେ ପାଣି ପାଟରେ ବସିଚ କିଆଁ ଆଉ ।



ଓଧରୁ ଖରଜର ।
ପୁଅଟି ତା'ର ଡାକ ଆଣିଚ
'ବିଲୁଆ' ଡାକତର ।

ପଶୁ ତା ପାଇଁ ବଡ଼ା ହୋଇଚ
ପାଳୁଅ, ଶାଗୁ, ବାଲି ।
ନଖାଇ ତା'କୁ ଖୋଜୁଚ ଔଷଧ
ଶେଉଳ ଝୋଳ ଖାଲି ।



ଷାଲୁର ପୁଅ "ଭୁଲ"
ସହର ଦେଖି ଯିବାକୁ ଦିନେ ସଙ୍ଗୀକୁ ମନକଲା ।
ତାହାଙ୍କ ମନା ମାନିଲା ନାହିଁ
ବୁଲ୍ ବୁଲ୍କା ଯେମିତ ଯାଇ
ସହର ପାଖେ ହେଲା ।
ଗାଡ଼ି ମଟର ଦେଖୁ ଦେଖୁ ତା ଛାତି ଧଡ଼୍‌କି ଗଲା
ପଳାଇ ଗଲା ଧାଇଁ ।
କହିଲା ମା'ଙ୍କେ ବଣର ସୁଖ ଆଉ କେଉଁଠି ନାହିଁ ।



ହାଟର ନାତି ବିଦେଶେ ଗଲା
ଉଡ଼ା ଜାହାଜେ ବସି
ଖାଇଲା ଲଡ୍ଡୁ ଜମିକ ଗଜା ସେ
ପିଇଲା ଥଣ୍ଡା ଲସି ।
ପଢ଼ିଲା ଭଲ ପାଠ ।
ଝର କଲମେ ଲେଖିଲା ପୁଣି
ଷୋଳ ଦଗୁଣ ଆଠ ।



ଗଧ ପୁଅର ବରତ ଘର
ଲଗିଚ ଭୋଜ ଭାତର ଧୁମ୍ ।
ନେଉଳ ନାଚେ, ନାଚୁଚ ପୁଣି
ଝୁମୁରୁ ଝୁମ୍—ଝୁମୁରୁ ଝୁମ୍ ।
ନାଚ ତାଳରେ ବଜାଏ ଷାଲୁ
ଢୋଲକ ଢୁମ୍—ଢୁମୁରୁ ଢୁମ୍ ।
ଦେଉଳୀ ପାରି ଗାଏ ଗୀତ
ଘୁମୁରୁ ଘୁମ୍—ଘୁମୁରୁ ଘୁମ୍



ଆମ ଜରୁ ଡାକତର ରୋଗୀ ତା'ର ଅଜା
ନାଡ଼ି ଦେଖି କହିଲ ସେ ଖାଅ ମାଛ ଭଜା ।
ମିଠା ଦହି, ଲସି, ପିଅ ଯେତେ ତୁମ ଇଚ୍ଛା ।
ତେବେ ଯାଇ ଦହି, ମନ ଲଗିବନି ଆଚ୍ଛା ।



ହାତୀ ଉପରେ ପାଠ ବସି ଯାଏ ବଜାର ବୁଲି ।
ନାଲି ଗାମୁଛା ଅଣ୍ଟାରେ ଭିଡ଼ି ଖଲୁ ଲଗାଏ ଚୂଲି ।
ପଶୁବା କାଟେ ହରଣୀ ନାଣ୍ଣ ।
ଗଧିଆ ଖୀର ବୁହାଏ ପାଣି ।
ମସଲ ବାଟେ ଠେକୁଆ ବସି
ନେଉଳ ଦଏ ମାଉସ କଷି
ହନୁ କରୁଚ ଭଜା ।
ଫେଣ୍ଟଲେ ପାଠ' ରଜା
ଏକାଠି ସବୁ ବସିବେ ଖାଇ
ହେବରେ ଭୋଜ ମଜା ।



ମେଘ ବରଷିଲ ଟୁପୁରୁ ଟୁପୁରୁ
କାକୁଡ଼ି ଧରିଲ ଭର୍ତ୍ତି ।
ମାଙ୍କଡ଼ ଯାଉଛି ବରବେଶ ହୋଇ
'କୁକୁର ପିଠିରେ ବସି ॥
ବାଣ ଫୁଟେ ଢୋ ଢୋ
ଝଡ଼ ବାଆ ହେଲ ଗଛ ଭାଙ୍ଗିଗଲ
ମାଙ୍କଡ଼ ନ ହେଲ ବାହା ।



ରଥ ଯାଉଥିଲ ଉଡ଼ାଜାହାଜରେ
ଅଖିରେ ଚଷମା ଦେଇ ।
ଭୋକହେଲ ଯହୁଁ ଘାସ ଖାଇବାକୁ
ତଳକୁ ଦଣ୍ଡିଲ ଡେଇଁ ।
ଗୋଡ଼ ଚାର ଭାଙ୍ଗିଗଲ
ମୁନ୍ନା ଦେଖୁଥିଲ ତଳେ ଠିଆହୋଇ
ହସି ହସି ଗଡ଼ିଗଲ ।



ଲୁଚି ଲୁଚି 'ଜିରୁ' ବହି ପଢୁଥିଲା
ଅଜାଙ୍କ ଚଷମା ମଣ୍ଡେଇ ।
"ଭଲ ଆଖି ତୋର ଖରାପ ହେବରେ
କହୁ ଆଉ ନେଲେ ଛଡ଼େଇ ॥
"ଜିରୁନା" କହିଲା ମତେ କଣ ତମେ
ଦବନାହିଁ ଟିକେ ପଢ଼େଇ ?
ଦେଖିବ ମୋ ବଳ ? ତୁମ ସାଥିରେ ମୁଁ
କରିବି ଏଇନେ ଲଢ଼େଇ ॥
ସତକୁ ସତ ସେ ଅଜାଙ୍କୁ ତାହାର
ଖଟ ଉପରେ ଦେଲା ଗଡ଼େଇ ।
ହସୁଥିଲେ ଆଉ, ରଗିଯାଇ ମାଆ
ଯାଉଥିଲେ ହାତ ବଢ଼େଇ ।
କହୁଥିଲେ "ତୁମେ ଟେଣ୍ଡାକର ତାର
ମୁହଁଟା ଦେଲଣି ବଢ଼େଇ ।
ନାହିଁ ନାହିଁ କହି 'ଜିରୁ'କୁ ତା ଆଉ
ଛାତିରେ ଧଇଲେ ଜଡ଼େଇ ।
କହିଲେ ଏଇ ମୋ ରୂପା ବଗିସ୍ତରେ
କଥା କୁହା ସୁନା ଚଢ଼େଇ ।



ଆରେ ଜହ୍ନ ତୁ ଆକାଶେ ଉଇଁ
ତୋହର ପାଖକୁ ଯିବଟି ମୁହିଁ ।
ରକେଟ୍‌ରେ ବସି ଯିବି ମୁଁ ଚାଲି
ତୋ ଉପରେ ବସି ମାରିବି ତାଳି ।
ମୋ ସାଥିରେ ଥିବେ ଟିକଲି, ମୀନା
ନାଚିବୁ ସଭିଏ ଧିନକ ଧିନା ।



ଆକାଶରେ ଯିଏ ଡୋଲା ଲଗେଇବ
ସିଏ ତ ଆମର 'କୁନା' ।
ଗଛ ଲଗାଇଲେ ରୂପା ଫୁଲ ଫୁଟି
ଫଳିବ ତହିଁରେ ସୁନା ।
ସମୁଦ୍ର ପାଣିକୁ ଶୁଖାଇ ସେ ତା'ର
ତଳରେ ଦେଖାଇ ଦେବ
ମନକଲେ ସିଏ ଆପଣା ମୁଠିରେ
ପବନକୁ ବାନ୍ଧି ନେବ ।



ପରଜାପଢରେ ପରଜା ପଢ
ସ୍କୁଲ୍ ଦେବ ଜଙ୍ଗଲ ବଣା ।
ନଈ, ନାଳ ଦେବ ଗ୍ରୀଷ୍ମକୁ ପାଣି
ମେଘ ବରଷିବ ମନକୁ ଜାଣି ।
ଚାଲଟେର ଦେବ ଜମିକୁ ସାର
ଶସ୍ୟ ଶସ୍ୟ ହୋଇ ଝୁଲିଲେ ଜନ ।
କାହିଁରେ ଅଭାବ ରହିବ ନାହିଁ
ହସରେ ଖୁସିରେ ପୂରିବ ଘର ।



'ଉଡ଼ାଜାହାଜ'ରେ 'ଉଡ଼ାଜାହାଜ'
ରକେଟ୍ ତୋ'ର 'ନାଉ' ।
ବେଲୁନ୍ ତୋର ପାକୁଆ 'ଅଜା'
ଜେଟ୍ ତୋର 'ସାଥି' ।
ପାଣି ଜାହାଜ 'ମିତ'
ମନ ମଉଜେ ଉଡ଼ୁ ତୁ ଗାଇ
ଭୁଁ ଭୁଁ ଭୁଁ ଗୀତ ।



ଆମ ପୁଅ ଯେବେ ସାରିବ ପଢ଼ି
କେତେ କୋଣାର୍କ ଦେବ ସେ ଗଢ଼ି ।

କୋଠା, ବାଡ଼ି ମାନ କରିବ ଠିଆ
ପାଣି ଭିତରେ ସେ ଜାଳିବ ନିଆଁ ।
ମାଟି ତଳେ ଅଛୁ ଯେତେ ଦରବ
ଉପରକୁ ସିଏ କାଢ଼ି ଆଣିବ ।
ଆକାଶ ହବ ତା ଖେଳ ପଡ଼ିଆ
ପହଁଚିବ ସିଏ ସାତ—ଦରିଆ ।
ଖରା ବରଷା ତା ବୋଲ ମାନିବେ
କଥା ମାନି ତାର ଆସିବେ ଯିବେ ।
ଲୁହା, ପଥରକୁ କଥା କୁହାଇ
ନୂଆ ନୂଆ କାମ ଦବ ଦେଖାଇ ।



ବାପା ଆଣିଛନ୍ତି ଟେଲିଭିଜନ
କୁନିଆଁର ଯାଇ ସେଇଠି ମନ
ସାରି ଦେଇଚି ସେ ତାହାର ପଢ଼ା
ଟେଲିଭିଜନ ସେ ଦେଖିବ ପରା ।
ସେଥିରୁ ସେ ଭଲ କଥା ଶିଖିବ
ତା ସାଙ୍ଗ ପିଲଙ୍କୁ ଶିଖାଇ ଦେବ ।



ଖବର କାଗଜ ପଢ଼ି ।
କୁନା, କୁନି ଦୁହେଁ ହସି ଯାଉଥିଲେ ଗଡ଼ି
'କୁନା' ଟି କହୁଚି 'କୁନି' ।
କଲର ମଣିଷ ଗୁରୁଜୀ ହୋଇବେ
ଆମେ ଗୃହ ହେବା ପୁଣି ।
ପଢ଼ାଇବେ ଭଲ ପାଠ
ଆମର ପାର୍ଥିକ ସେଇ ପାଠ ଢନେ
ଫିଟାଇବ ନୂଆ ବାଟ ।
ଏଇତ ଖବର ନୂଆ
ଜାଣିଥାଆ ଆମେ ଯନ୍ତ୍ରଯୁଗର ଝୁଆ ।



'ଜରୁ' ଚାଲିଯିବ ରକେଟ୍‌ରେ ବସି
ଚନ୍ଦ୍ର ରାଇଜକୁ ଉଡ଼ି
ଆମପାଇଁ ସିଏ ପଠାଇବ ସେଠୁ
ଆକାଶର ଫୁଲ ଝୁଡ଼ି ।
ଆସିଲେ ବେଳକୁ ସାଥିରେ ଆଣିବ
ସେଠାକାର ସାଙ୍ଗ ସାଥି ।
ସେଇ ରାଇଜର ପୋଷାକ-ପତର
ଖେଳନା ନାଟକ ନାଚ ।



ବହି ପଢ଼ି ସାରି ଜେଜେଙ୍କ ଆଗରେ
କୁନା କହୁଥିଲେ ହସି ।
"କଳର ମଣିଷ କଥା କହୁଅଛି
ଅଙ୍କ ଦେଉଅଛି କଷି ।
ଡାକତର ପରି କାହାର କି ରୋଗ
ପାରୁଅଛି ସବୁ ଜାଣି ।
ଯୋଗେଇ ଦେଉଛି ପଥ୍ୟ ଅଉଷଧ
ରୋଗୀର ପାଖରେ ଆଣି ।
ଦୋକାନେ, ବଜାରେ ବିକା କିଣା କରି
ହିସାବ ରଖୁଛି ସିଏ ।
ମଟର-ଜାହାଜ, ରେଳ ଚଲାଉଛି
ତାହାପରି ହବ କିଏ ।
'ରୋବଟ୍' ତାହାର ନାମ ।
ଜେଜେ କହିଲେ 'ଏ କଳ ଯୁଗ ପରା
'କଳ' କରେ ସବୁ କାମ' ।



ଆମ କୁନା ବାବୁ, ମାଛ ଭଳି ବୁଡ଼ି
ଦେଖିବ ଦରିଆ ତଳ ।
ମନ ହେଲେ ସେଠି ପାଣି ରାଇଜରେ
କରିବ ତାହାର ଘର ।

ଦରିଆ ଭିତରେ କେତେ ଗଛ ମାଛ
ସାପ, ମାଳା, ମୋତି ମାନ
ଦେଖିବ ଆଣିବ ଉପରକୁ ଯିଏ
ହେବ ଯେବେ ତାର ମନ ।



ଆମ 'ଜରୁ' ବାବୁ କଅଣ କେଜାଣି
କହିଦେଲେ ହାତଠାରି ।
ଗଛ ମାନେ ସବୁ ବୁଝି ପାରି ତାହା
ବାହାରିଗଲେ ଝୁଲି ଝୁଲି,
କିଏ ଦଉଡ଼ିଲେ କିଏ ସେ ଡେଇଁଲେ
କିଏ ହଲାଇଲେ ମଥା ।
ହଁ, ହଁ କହୁ ଆମ 'ଜରୁ' ବାବୁ
ବୁଝୁଥିଲା ତାଙ୍କ କଥା ।



ଖଜଗ୍ରମାନ କ ହଜର୍ ମାନ ।
ଏମିତିଆ ଚୂଲି କଲେନିଁ । ଜାଳ ।
କାଠକ ଲୁଠା—ଘଷିର ମୂଠା,
ପାଖରେ ତାହାର ଥାଏ ନାଁ ।
ରନ୍ଧା ଘରେ ଖାଲି ରହେନାଁ ।
ଢଳୁଣି ଜଆଁ ତା ଜାଲେଣି ।
ଧାସ କାଟେ ନାହିଁ, କଳା କରେ ନାହିଁ
ଧୂଆଁ ପାଇଁ ନାହିଁ ଜ୍ୱଳେଣି ।



ଝୁମୁରୁ ଝାଇଁ—କଳର ଗାଈ
କଳଗାଈଟିର ବାଛୁରି ନାହିଁ ।
ଚର ଯାଉନ କ ଚନ୍ଦା ହଉନ
ଘାସ, ଲୁଟା, କୁଣ୍ଡା, ପିଡ଼ିଆ ଖାଉ
ଖୁସିରେ ସେ କ୍ଷୀର ପାରୁଚ ଦେଉ
ବାବୁନ ଖୁସି ତା କ୍ଷୀରକୁ ପିଉ ।



ଢାପା ଆଣିଥିବା କଲ ସ୍ୱଲବାରୁ
ଉଷ୍ମ ହୋଇଲା ଜେଜଙ୍କ ଘର ।
ଶୀତଦିନ ସାଥି ନଆଁ ଉହ୍ନେଇବାକୁ ଜେଜେ,
ଜେଜେ ମାଆ କରଲେ ପର ।
ନାତି, ନାତୁଣୀଏ ତେଳ ବୁଝିଗଲେ
ସେଇ ଘରଟିରେ ବସିଲେ ଯାଇ ।
ଶୁଣିଲେ ଜେଜେଙ୍କ ମଜାଗପ ସବୁ
ଜେଜେମା କୋଳରେ ପଡ଼ିଲେ ଶୋଇ ।



'ଟିକନ' କହିଲା କେମିତି ମଜା ।
କଲ କରାମତି ଜାଣିଲ ଅଜା ।
ଆଉ ଶୁଣି ଦେଲେ ଠୋ ଠୋ ହସି ।
କହିଲେ ଏପରି କଳଯୁଗ ସାଙ୍ଗେ
କଳଯୁଗ ସାଙ୍ଗ ହୋଇଲା ଆସି ।
ଜାଣିଲୁ 'ବାବୁ'
ଆମ କାଳରେ ଏ ନଥିଲା ସବୁ ।



କଅଁର ପାଣି କ ପୋଖରୀ ପାଣି
ନଆଁ ଲଗି ନାହିଁ ଉଠୁଛୁ ଧୂଆଁ ।
କେମିତି ଉଠୁଛି ?
ଏ କଥାଟି ଖୋଲି କହିବ ଯିଏ,
ଝରୁ ଦେବ ତା'କୁ ଗୋଟିଏ ମୁଆଁ ।



ପାଠ ପଢ଼ି ପୁଅ ଜହ୍ନ ରାଇଜକୁ
ଚିଠି ଲେଖି ପଠାଇବ ।
ସେ ରାଇଜ ପିଲା ବୁଲି ଆସିବାକୁ
ସେଥିରେ ସେ ଲେଖିଥିବ ।
ଭାରି ଖୁସି ହୋଇ ପୁଅ ଝିଅ ସବୁ
ଆସିବେ ସେ ଚିଠି ପାଇ ।
ଆମ ପୁଅ ସାଙ୍ଗେ ଆଶପା ଭାବରି,
ଖେଚେଡ଼ି ବସିବେ ଖାଇ ।

ଖିଆ, ପିଆ ସାରି ଖେଳାବୁଲା କରି
ଦେଶକୁ ଫେରିବେ ଯେବେ
ଆମ ପୁଅ ଝିଅ ସାଙ୍ଗରେ ତାଙ୍କର
ଫୁଲ, ଫଳ, କୋଳି ଦେବେ ।



ରକେଟ୍ ଦିଅ ଗୁଡ଼ି ।
ରକେଟ୍ ଦିଅ ଗୁଡ଼ି ।
ମୋ ପୁଅ ଯିବ ଚନ୍ଦ୍ର ଦେଶେ
ସେଇ ରକେଟ ଚଢ଼ି ।
ସେଇଠି ସିଏ ରହିବ ଯାଇ
ସାଥିରେ ନେବ ଭଉଣୀ ଭାଇ
କରିବ ତା'ର, ଘର ଦୁଆର
କିଣିବ ଜମି ବାଡ଼ି ।
ପୋଖରୀ ଖୋଳି ଛାଡ଼ିବ ମାଛ
ଫସଲ କରି ବାଛିବ ଘାସ
ଲଗାଇ ଦେବ ଗୁଆ-ନଡ଼ିଆ-
ପଣସ ଗଛ ଧାଡ଼ି ।
ଯିବା ଆସିବା କରିବା ପାଇଁ
କିଣିବ ନୂଆ ଗାଡ଼ି ।



ଘିରି ଘିରି ହୋଇ ବୁଲୁଚି ପଙ୍ଖା ଟିଲା
ତାକୁ ବୁଲେଇଛି କିଏ ।
ଆମ ପୁଅ ଯେବେ ବଡ ହୋଇ ଯିବ
କହିଦବ ଏକା ସିଏ ।
କେହି ନଜାଣେ ମୋ ପୁଅ ଜାଣିବ
ସବୁ ନଜାଣିବା କଥା ।
ସବୁ କାମ ଯାକ ଭଲ କରିବାକୁ
ଖେଳାଇବ ସିଏ ମଥା ।



ମାଛ ଖାଇସାର ମନଟିକୁ କର ଖୁସି ।
ଫୋନ୍ କଲ ବସି ତା' ମାଆ ପାଖକୁ ପୁସି ।
"ଆଜି' ସକାଳରୁ ପହଞ୍ଚିଛି ଆସି 'ଭୂଆ'
ଆଣିଛି ଗୋଟିଏ 'ଟେଲିଭିଜନ' ସେ ନୂଆ ।
କେତେ ଗୀତ, ନାଚ, କେତେ ପୁଣି ନୂଆ କଥା ।
ଦେଖି, ଦେଖି ତହୁଁ ଘୂରି ଯାଉଛି ମୋ ମଥା ।
ଆସିବୁ ତୋତେ ମୋ ପ୍ରାଣ !
ଥରେ ତୁ ଦେଖିଲେ ସବୁବେଳେ ତୋର ଦେଖିବାକୁ ହବ ମନ ।



ମଥାରେ ତାଙ୍କର ମଣି ଝଲସଇ
କଟକେ କଟକ ଚଣ୍ଡି ।
ପୁଅ ମୋ'ର ତାଙ୍କୁ ଦରଶନ କଲେ
ଫୁଲମାଳେ ଦବ ମଣ୍ଡି ।
ଲଡୁ, ଗଜା, ସର ପୁଳି ।
ପେଡ଼ା, ଛେନାଗଜା, କୋସ୍ତ ଖେଗନର
ଘିଅଦୀପ ଦବ ଜାଳି ।



ମଥାକୁ ସୁନ୍ଦର ଟୋପି ଚନ୍ଦନ ଲେ
ଗଳାକୁ ମାନଇ ମାଳ ।
ପୁଅ ମୋର ଗଲେ କଲିକତା ବୁଲି
ଦେଖିବ ଦକ୍ଷିଣ 'କାଳୀ' ।



ରାମ ଚଣ୍ଡୀ ଦେବୀ ଗ୍ରାମ ଦେବତା
କୋଣାରକ ଆଢ଼େ ଘର
ଗାଡ଼ିରୁ ଓହ୍ଲେଇ ଆସରେ ଆଗ
ଦେବୀ ଦରଶନ କର ।
ଇଲ୍ ଇଲ୍କା ନାଁ । ଚିଲ୍କା
ଚିଲ୍କାରେ "କାଳିଜାଈ"
"କାଳିଜାଈ" ଡାକ 'ନାଆ' ଫିଟାଇଲେ
ବିପଦ, ଆପଦ ନାହିଁ ।



ପାଣିର ଖେଳୁଛି ଚକା ଭଉଁରି ଲୋ
ଦୋହଲି ଯାଉଛି ନାଆ ।
ମହାନଦୀ କୂଳେ ଧବଳେଶ୍ୱରଟି
ସଭିଁର ଭରସା ସାହା ।
ସିଂହର ପିଠିରେ ବସେ କଟଚନ୍ଦ୍ର
ଝଙ୍କଡ଼େ 'ଶାରଳା' ମାଆ
ଗଜ ମୂର୍ଖ ବି ପାଠୁଆ ହୁଏଟି
'ଶାରଳା' ହୋଇଲେ ସାହା ।



୧—ଫୁଲ, ଫଳ ଫସଲରେ ବାଲିପଡା ଭରିବ
ମାଟି ବିନା ଗଛ, ଲତା ଆକାଶରେ ଫଳିବ ।

୨—ସମୁଦ୍ର ତଳରେ ଆମେ ଘରଦ୍ୱାର କରିବା
ବିଜୁଳିକୁ ଦିନେ ଆମେ ହାତରେ ବି ଧରିବା ।

୩—ଆମର ସହର ହେବ-"ଜହ୍ନମାମୁଁ" ରାଇଜ ।
ତାରି ସବୁ ଗାଆଁ ହେବେ-ହେବ ବଡ଼ ମଉଜ ।

୪—ଖରା, ବରଷା, ପବନ, ଆମ କଥା ମାନିବେ
କଳର ମଣିଷ ସବୁ କାମ-ଦାମ କରିବେ ।

୫—ଜଳ ଗାଈ କ୍ଷୀର ଦବ ଶହ ଶହ ଲିଟର
ଧନ, ରତନ ଯେତେକ ଅଛି ମାଟି ଭିତର—

୬—ଆମରି ହାତରେ ସବୁ ଉପରକୁ ଆସିବ
ବଡ଼ ବଡ଼ କାରଖାନା କଳମାନ ବସିବ ।

୭—ଅଭାବ, ଅସୁଖ, ରୋଗ ଯୋଗିବେନି କେହିରେ
ସତ ହବ ଦିନେ ଯାହା ଲେଖାଅଛି ବହିରେ ।



ଆମ ଜଗନ୍ନାଥ ଦାରୁ ଦେବତା
ଭାଇ ଭଉଣୀଙ୍କୁ ସାଥିରେ ଧରି
ଚକାଆଖି ମେଲି ଦେଉଛନ୍ତି ବଳେ
ଡାଅରେ, ଡାଅରେ ଜୁହାର କରି ।
ତାଳରେ ତାଳ ପୋହଳା ମାଳ
'ଭଦରଖେ' ବଜେ ଭଦରକାଳୀ ।
ଦରଶନ ତାଙ୍କୁ କରିବ କିନା
କାଳୀ କରିବେ ତା ମଣ୍ଡକୁ ଚୁନା ।
ଗଙ୍ଗାପାରି ହେଲେ ଦକ୍ଷିଣକାଳୀ
ମଶାଣି କାଳୀଟି କଟକେ ।
କାଠଯୋଡ଼ି ବନ୍ଧେ ବୁଲି ଯାଉଥିଲେ
ଆଖି ତାଙ୍କ ପାଖେ ଅଟକେ ।



‘ଝାର୍ଣ୍ଣି’ରେ ଚଢ଼ିବା ଚନେ ।
ଦେଖି ରୂ ଆସିବୁ ଜନେ
କୋଣାରକ ଯେବେ ଯିବୁ ।
ଆଖିରେ ପଲକ-ପଡ଼ିବ ନାହିଁ ଯେ
ଦେଉଳକୁ ଦେଖୁଥିବୁ ।
ଦେଉଳ ସହର ‘ଭୁବନେଶ୍ୱର’
‘ଲିଙ୍ଗରାଜ’ଙ୍କର ଦେଉଳ ବଡ଼ ।
ଦେଖିବାକୁ ଯେବେ ପଡ଼ିବ ଯୋଉ
ଉଖୁଡ଼ା କଦଳୀ କଣବା ଲୋଡ଼ ।



ମଗୁଣୀରଂ—ମଗୁଣୀର ମାସ କେମିତି ଗ୍ରହିବ
ପିଠା ମାଣବସା ପାଇଁ ?
କୁନ୍‌ମୁନ୍ ମୋର ଶୀତରେ ସକାଳୁ
କୋଳ ମୋ’ର ଗ୍ରଡ଼ୁନାହିଁ ।
ସୋଣଷ ଷେତରେ ହଳଦିଆ ଫୁଲ
ଫୁଲରେ ପହୁଁରେ କାଆ ।
ଚଷା ଭାଇ ଯାଏ ଧାନ କାଟିବାକୁ
ହାତରେ ଦଉଡ଼ି ଦାଆ ।

ପୁଷ—ପୁଷ ମାସ ହେଲା ପାଖରେ ବସାଇ
ଚୁଲିକି କହିଲି ଚୁଆଁ ।
ସଙ୍କ୍ରାନ୍ତି ଦିନ ଜେଜେମା ଆମକୁ
ଖୋଇଦେବେ ଧନୁ ମୁଆଁ ।

ମାଘ—ମାଘ ପୁନିଅଁକୁ ‘ଅଗି’ ଜଳିବଟି
ଗଦାହେବ ଛଣ ଧାନ ।
ଅଗି ନିଆଁ ଦେଖି ଶୀତ ପଳାଇବ
ଭାଙ୍ଗିଯିବ ତା’ର ଟାଣ—

ଫଗୁଣ—ଆମ୍ବ କଷି ନେଇ ଫଗୁଣ ଆସିଲା
କୋଇଲି ଗାଇଲା ‘କୁହୁ’
ମୋ ଧନ-କନ୍ଦୁର ‘ଦୋଳ ମେଲଣ’କୁ
ମାମୁଁ ଘର ଯିବ ମୁଁ ।

ଚୈତ୍ର—ଚଇତ୍ର ପୁନଏ ଚଇତ୍ର ଘୋଡ଼ାଟି
ନାଚି ବୁଲେ ଗାଁ ଗାଁ ।
ନାଚଇ ରାଉତ, ନାଚେ ରାଉତାଣୀ
ଦେଖିବୁରେ ଧନ ! ଯାଆ ।
ବୈଶାଖ—ବଇଶାଖ ମାସେ ଝୁଉଁ ଝୁଉଁ ଖରା
ଖରାରେ ବୁଲନା କେହି ।
ଖରାବେଳ ଯାକ ଘରେ ଯିଏ ରହେ
ସୁନା, ପୁଅ ଝିଅ ସେହି ।
ଜ୍ୟେଷ୍ଠ—ଜ୍ୟେଷ୍ଠ ମାସେ ଖର ଟାଣୁଆ ଖରା
ହରିଣ ଛୁଆଟି ନଦଏ ଧରା ।
ଶୋଇ ପଡ଼ିଚି ସେ ଗଛ ଛାଇରେ
'ସୁନାପୁଅ' ତାକୁ ଉଠା ନାହିଁରେ ।
ଉଠିଲେ ଖୋଜିବ ମାଆକୁ ତା'ର
ନପାଇ ଢାଳିବ ଲୁହର ଧାର ।
ଆଷାଢ—ଟୁପୁ ଟୁପୁ ଟୁପୁ ମେଘ ଟୋପା ଆଣି
ଆସିଚି 'ଆଷାଢ଼' ମାସ
ଲୁନା, ଲୁନୀ ସବୁ ଓଦା ହୁଅ ନାହିଁ
ଧରିବ ଶରଦ, କାଶ ।
ଶ୍ରାବଣ—'ଶିରାବଣ' ମାସେ ଜନ୍ମିଲେ ମାଆ
'ଚକୁଳି' ସାଙ୍ଗରେ 'ଚତୋଉ' ଖାଆ ।
ଥାଳି ଭରି ଖୁଡ଼ୀ ଦେବେଟି ବାଢ଼ି ।
ଲୁନା ଖାଇଦବ ହାକୁଟି ମାରି ।
ଘୋଟା ଘୋଟା କରି ମାରିବ ହାଇ ।
ଜେଜେମା କୋଳରେ ପଡ଼ିବ ଶୋଇ ।
ଭାଦ୍ରବ—ଭାଦୁଅ ମାସର ସୁରି ରବିବାର
ଖଦୁରୁକୁଣୀ ପୂଜା ହବ ।
ମୋ ଲୁନୀ ପୂଜିବ ମାଆ ମଙ୍ଗଳାଙ୍କୁ
ଲଡ଼ୁ, ଗଜା ଭୋଗ ଦବ ।
ଆଶ୍ୱିନ—ଅଶିଣ ମାସରେ ଦଶହରା, ଯାତରା
ଦେଖିଯିବେ ଅଜା ଆଈ ।
ଭଲ ଭଲ କେତେ ଖେଳନା ଆଣିବେ
ଆମ ଲୁନା ଲୁନୀ ପାଇଁ ।

କାର୍ତ୍ତିକ--'କାରତକ' ମାସ ଉଆଁସ ରାତରେ
ବୁନା ଦବ ଦୀପ ଜାଳି ।
ବାଣ ଫୁଟାଇବ ଠୋ, ଠା ଠୁ
ବୁନୀ ମାରୁଥିବ ତାଳି ।



ଶୀତ ଅଇଲାରେ ଶୀତ ଅଇଲା
ଘୋଡ଼ା କାନେ ଯାଇ ଗଧ କହିଲା ।
ତୁମର ମୋ'ର ବଢ଼ିବା ମିତ ।
ମୁଁ ଗାଇବି ସ୍ୱର ବଢ଼ିଆ ଗୀତ ।
ତୁମେ ବଜାଇବ ବାଜା ।
ଶୁଣି ମନ ହେବ ତାଜା ।



ଶ୍ରାବଣ ମାସେ ଘୋର ବରଷା
ବେହୁଷଣ କାମେ ଲାଗଇ ଚଷା
କଙ୍କଡ଼ା ବାହାରେ ଗାତରୁ ।
ବାବୁନ ପାଇଁକି ଟିକି ଛତାଟିଏ
ବାପା ଆଣିଚନ୍ତି ହାଟରୁ ।



ଅଗଣେ ଧୋବଲି ଜହ୍ନଗୋ
ଫୁଲ ବଉଳ ବେଣୀ
ସେଇ ଜହ୍ନ ତଳେ ସାଙ୍ଗସାଥି ମେଳେ
ଝୁମା ଗୀତ ଗାଏ ଶୁଣ ଗୋ
ଫୁଲ ବଉଳ ବେଣୀ ।୧।
ନଡ଼ିଆ ଗଛର ଛୁଇ ଗୋ
ଫୁଲ ବଉଳ ବେଣୀ
ଲଟ୍ଟୁ, କାଟୁ ଯିବେ ଦଶରା ଯାତରୁ
ସାଙ୍ଗେ ନେଇ ଅଜା, ଆଉ ଗୋ
ଫୁଲ ବଉଳ ବେଣୀ ।୨।



ଫଗୁଣ ମାସରେ ଦଗ୍ରଣ ଶୀତ ।
'ବୁନା' 'ବୁନ୍ଦ' ମୋର ଗାଇବେ ଗୀତ ।
ଆମ୍ବଭସି ଲୁଣ ଖାଇବେ ବସି ।
ମାଆ ମନାକଲେ ଦେବେ ସେ ହସି ।
ପୁନଅଁ ବାସିରେ ଦୋଳ ଖେଳିବେ ।
ଜେଜୁଙ୍କ ମୁହଁରେ ରଙ୍ଗ ବୋଳିବେ ।
ଜେଜେ ମାଆ ଦେବେ ହସି
ଖଜା, ଗଜା, ଲଡୁ-ପିଠା ବାଣ୍ଟିଦେବେ
ପିଲାଏ ଖାଇବେ ବସି ।



ଆମର 'ଜରୁ'ଟି ପରଜାପତି
ଫୁଲଠାରେ ତା'ର ଶରଧା ଅତି ।
ରାତି ପାହୁ ଯେବେ ସକାଳ ହୁଏ
ଶେଯରୁ ଉଠି ସେ ବଗିଚ୍ଚୁ ଧାଏଁ ।
ଫୁଲ, ମହୁମାଛି, ଭଅଁର ସାଥେ
ହସି ହସି ସିଏ ଖେଳରେ ମାତେ ।



ଦୁନିଆ ଯାକରେ ଯେତେ ପୁଅ, ଝିଅ
ମୋ ମୁନ୍ନା ଭଉଣୀ ଭାଇ ।
ପାଠ ସେ ପଢ଼ିବ ଦେଶ ସେ ଗଢ଼ିବ
ଲଢ଼ିବ ତାଙ୍କର ପାଇଁ ।
ମୋ ପୁଅ ସତ କଏ ହେବ ।
ଉଡ଼ି ଯାଉଥିଲେ ଜେଟଣୀ ପାରଟି
ଧରି ଆଣି ସିଏ ଦବ ।



ଓଳିକ ଓଳି କଣ୍ଢେଇ କୋଳି
କୋଳି ଖାଇଗଲା କାଳିଆ ।
ଆମର ପୁଅଟି ସରଗ ଚାନ୍ଦ
ଆମ ଝିଅ ସୁନା ଥାଳିଆ ।
ସୁନା ଥାଳିଆରେ ମାଣିକ ମାଳି
'ସରଗ ଚାନ୍ଦ'କୁ କେ ଦେଲା ଗାଳି ?
ଶୁଖି ଯାଇଚି ତା ମୁହଁ ।
ଆ' ଧନ ମୋର କୋଳକୁ ଆ'ରେ
ପୋଛି ଦେବି ତୋ'ର ଲୁହ ।



ଚେଙ୍ଗ, ବେଙ୍ଗ ଦୁଇ ମିତ ।
ଗଡ଼ିଆ ଭିତରେ ଚେଙ୍ଗ ନାଚୁଥିଲା
ବେଙ୍ଗ ଗାଉଥିଲା ଗୀତ ।

ଚିଲ୍ କାଉ ଦୁହେଁ ଦେଖି
ଚିଲ ଝାମ୍ପିନେଲା 'ଚେଙ୍ଗ'କୁ
'ବେଙ୍ଗ'କୁ କାଉ ନେଇଗଲା ଟେକି ।



ବଗ ଚାଲେ ଡଗ ଡଗ
ବଗ, ବେଙ୍ଗ ଦୁହେଁ ସଙ୍ଗାତ ବସିଲେ
ଦେଖି କାହ୍ନାଇଆ ପାଗ ।
ଦେଉଳେ ବାନ୍ଧିଲେ ନେତ
ସାଥି ହୋଇକରି ଦେଖିବାକୁ ଚଲେ
ଜଗନ୍ନାଥଙ୍କର ରଥ ।



ଖରାରେ ଝରା ତୁ କାହିଁକି ଆସି
ଝାଳ ଗମ ଗମ ବୁହାଇ
ଆମର ପୁଅକୁ ଛଟପଟ କଲୁ
ଦେଲୁନାହିଁ ଜମା ଶୁଆଇ ।
ଜଦ ତ ଜଦ ପୋହ୍ଳା ବଦ
ବଦ ଡହିଁରିଆ ମାଳ ।
ଆମ କୁନା କୁନି ଖେଳିବେ ହୋଲି
ରଙ୍ଗ ପିଚକାରି ମାରି ।



ନଡ଼ିଆ ଗଛରେ ନଡ଼ିଆ ଗଛ
'ତାଳ'ଗଛ ତୋ'ର ପଡ଼ଶା
ଗୁଆ ଗଛର ତୁ ମାଉସୀ ପୁଅ
ଅମ୍ବୁଡ଼ା, ଶାବୁଡ଼ା, ଖଜୁରି ଗଛ ତୋ
ବନ୍ଧୁ, ବାନ୍ଧବଙ୍କ ସରସା ।
କଦଳୀ ଗଛ ତୋ ଗାଆଁର ।
ପବନଠୁ ଖାଏ ପାହାର ।



ଉଡା ଜାହାଜରେ ହଡ଼ାଜାହାଜ
ଉଡ଼ ହୁଡ଼ ଉଡ଼ ଯାଅ ।
ଯେତେ ଯେତେ ଗାଆଁ-ସହର ଅଛୁ
ସବୁ ବୁଲି ଫେର ଆ ।
ସେ ଆଡ଼େ ଅଛନ୍ତୁ କେତେ ମୋ ସାଥି
ତାଙ୍କର କଥାଟି କହ ।
ଆମ ଗାଁ ପାଖେ ବଡ଼ ପଡ଼ିଆ
ସେଇଠି ଟିକିଏ ବସ ।



ଆମ ଝୁନୁମୁନ-କଥା କହେ ରୁନ
ହସେ ଝୁର୍ ଝୁର୍—ଘୁହେଁ ଜୁଲୁ, ଜୁଲୁ
ଘୁଲେ ଠୁକୁ ଠୁକୁ
ଚାଟିଆଏ 'ଦଦ' ଧରି ପିଏ ଢୁକୁଢୁକୁ ।



ଆ ବଗଭାଇ ଟଙ୍କା ନେଇଯା
ଆମ 'ଜରୁ' ପାଇଁ ମାଛ ଦେଇଯା ।
'ଜରୁ' ଭଲପାଏ ରେହୁ, ଖକୁର,
ବାଲିଆ, ଶେଉଳ, କଉ, ମାଗୁର ।
ଟଙ୍କା ନେଇକରି ବଜାର ଯିବୁ
ବଗୁଲି 'ପାଇଁକି ଶାଢ଼ୀ ଆଣିବୁ ।
ତୋ' ପାଇଁ ଆଣିବୁ କାମିଜ, ଲୁଗା
ବାଦାମ ଆଣିବୁ ଗୋଟିଏ ଠୁଙ୍ଗା ।
ନମିଳିବ ଯେବେ କେଣ୍ଡି-କଣ୍ଟି ।
ଦୁହେଁ ଯାକ ତା'କୁ ଖାଇବ ବସି ।



ଶୁନ୍ ଶୁନ୍ ଫଟକା ।
ଆମ ଅଜା ବୁମ୍ବିଗଲେ ଅଟକାରେ ଅଟକା
ଅଟକିଲେ ନାହିଁ ଅଜା ରଗିଗଲେ ଘୁଲି ।
ଆମ ଅଇ ଆଣିବାକୁ ଯିବେ ତାଙ୍କୁ କାଲି ।
ସ୍କୁଟର୍ ଚଳାଇ ଏକା ଯିବେ ଆମ ଆଇ ।
ଲଡ଼ୁ, ଗଜା ନେଇଥିବେ ଅଜାଙ୍କର ପାଇଁ ।



ଛତୁରେ ଛତୁ-ମେଘ ଘୋଟି ଆସେ ନଈ ସେପଟୁ ।
ଛତୁରେ ଛତା-ବେଣୀକ ଝୁନ୍ଦୁଆ-ବାଆକୁ ବତା ।
କଥା ପାଇଁ ନଥା - ମଥାକୁ ଟିପା ।
ମାଟିର ଘରକୁ ଗୋବର ଲିପା ।
ପାଳୁଆ ଅଜାଙ୍କୁ ପାକେଇ ଆଣ ।
ନହେଲେ ସୁନ୍ଦର ଦଣଇ ନାହିଁ ।
ଆଈଙ୍କ କୋଳକୁ ନାତୁଣୀ ନାଉ ।
ଯାତର ବୁଲାକୁ ସାଙ୍ଗରେ ସାଥି ।



ଆ' ହୁଡ଼ୁଆ ବଣି ଚଢ଼େଇ ।
ପାଣି ପିଇଦବୁ ଡାଳ ଗଢ଼େଇ ।
ଭାତ ଖାଇଦବୁ ପେଟ ପୂରେଇ
ମୋ ସାଙ୍ଗେ ଖେଳବୁ ନଟୁ ଘୂରେଇ ।
ଅରୁଆ ଚାଉଳ ସରୁଆ ଭାତ ।
ବାଳୁଙ୍ଗାକୁ ଗାଈ ମାଇଲା ନାତ ।
ବାଳୁଙ୍ଗା ଗୁଡ଼ିଲା ଭେଁ, ଭେଁ ରଡ଼ି ,
ଗଡ଼ି ଗଡ଼ି ଯାଏ ଶଗଡ଼ ଗାଡ଼ି ।
ଶଗଡ଼ ଗାଡ଼ିର ଦୁଇଟି ଚକ
ଗୋଟିଏ ଗାଁରେ ଢନୋଟି ଠକ ।
ଠକ ଖାଇଗଲେ ଠୋକର ।
ହସି ପକେଇଲା ଜୋକର୍ ।



ଉଡ଼ି ଉଡ଼ି ଯାଆ ନାଲି ଗୁଡ଼ିଟିରେ
'ଜିତୁ' ଉଡ଼ାଉଚ ତୋତେ
ଉଡ଼ି ଯାଇ ଅ.ସି ଆକାଶେ ଗାଈଜ
ଖବର କହିବୁ ଯେତେ ।
'ଜିତୁ' ବସିଥିବ ସପଟି ପକେଇ
ହାତେ ଧରିଥିବ ବହି ।
ପାଠ ପଢୁଥିବ ମନକୁ ଲଗାଇ
ତା ପାଖକୁ ଯିବୁ ରହି ।

କହନ୍ତୁ କେମିତି 'ଉଦଭଦଲିଆ'
ତୋ ମାଥିରେ ଫେଙ୍କୁଥିଲି ।
ଶଙ୍ଖ ଚିଲ ଭାଇ ହସି ହସି ହୋଇ
ତୋ କଥା ପଚାରୁ ଥିଲି ।



କମ୍ପି କାକୁଡ଼ି ।
କୁନା ଫେଙ୍କୁଥିଲି ଡାଳ ମାଙ୍କଡ଼ି ।
ଏ ଡାଳ ସେ ଡାଳ ଡେଇଁ,
ଡେଇଁ ଡେଇଁ ଗୋଟେ କଚଡ଼ା ଖାଇଲି
ଦେଖୁଥିଲେ ବଡ଼ ଭାଇ ।
ବଡ଼ ଭାଇଙ୍କର ବଗୁର ଭାବ ।
ସେ ଦନୁ କୁନାକୁ ଘରୁ ବାହାରକୁ,
ଧନକ ପାଇଁକି ନ ଦେଲେ ଛୁଡ଼ି ।



ନଟେ, ପଟେଇ, ଚଟେଇ ।
ଆମ 'ଲୁଲୁ'ବାବୁ ବାଗୁଡ଼ି ଖେଳରେ
ସବୁଶିକ ଦବ ହଟେଇ ।
ବୋହୂ ବ୍ରେଣ୍ଡ ଯେବେ ଖେଳିବ ।
ଖେଳରେ କଏ ସେ ବଳିଯିବ ତାକୁ ?
କଏ ଭଲି ତା'କୁ ଧରିବ ।



ରଜ ସଜ ବାଜ ବଡ଼ ମଉଜ
ସଜ କରିଦେବେ ନୂଆ ଷଉଜ ।
କୁନିକ ହଳଦୀ ଦେବେ ଲଗେଇ ।
ମଥାରେ ଚନ୍ଦନ ଦେବେ ସଜେଇ ।
ବାପା ଆଣିଚନ୍ତି ସୁନାର ଚୂଡ଼ି ।
ଭାଇ କଣିଚନ୍ତି ଜାମାର ଯୋଡ଼ି ।
ମାଆ ରଖିଚନ୍ତି ନାଲି ଶବନ ।
ନୂଆ ଚପଲରେ କୁନିର ମନ ।

ଆଉ କରୁଚନ୍ତି ନଡ଼ିଆ ଗଛ ।
ପୋଡ଼ ପିଠା, ମୁଢ଼ି, ଉଖୁଡ଼ା ଖଇ ।
ଖାଇ ନାଇ, କୁନି ସାଥି ମେଳରେ ।
ମାତିଯିବ ରଜ ଦୋଳି ଖେଳରେ ।



ବଣି ଚଢ଼େଇରେ ବଣି ଚଢ଼େଇ ତୁ
ଆତ ଗଛେ ବସା କଲୁ ।
ପୁଅ, ଝିଅ ତୋ'ର ଏକା ରହୁଚନ୍ତି
ଆଧାର ପାଇଁକି ଗଲୁ ।
କୁନି ପିଲାଙ୍କର କୁନି କୁନି ପାଟି
କାନ୍ଦୁଚନ୍ତି ଚହିଁ, ଗୁଆଁ ।
କିଏ ସେ କହୁଚ ଭୋକ ହେଲା ଭାଈ
କିଏ ସେ ଖୋଜୁଚ ମାଆ ।



ଡେଙ୍ଗା ସର ସର ନଡ଼ିଆ ଗଛଟି
ଆକାଶକୁ ଟେକି ମଥା ।
ଦିନରେ ସୂରୁଯ, ରାତିରେ ଚନ୍ଦର
ସାଥିରେ କହୁଚ କଥା ।
ପଇଡ଼, ନଡ଼ିଆ ଝାଡ଼ି ଦଉଚ ସେ
ଆମ କୁନ୍ ମୁନ୍ ପାଇଁ ।
ନଡ଼ିଆ ଗଛ ସେ ବଡ଼ିଆ ଗଛ
ବାଟକୁ କରଚ ଛାଇ ।



ମେଘ ବରଷୁଚ ଟପର ଟପର
ନାଚୁଚ ବିଜୁଳି ନାଣୀ ।
କୁନି ବଗିଚାରେ ଦୋଳରେ ଝୁଲୁଚ
ଗୋଲାପ ଫୁଲର ରାଣୀ ।
ବେଙ୍ଗୁଲି ଡେଇଁଚ ଫକର ଫକର
କେଁ କଟ କଟ ଡାକ ।
ଲୁଲୁ ମୋ'ର ଏବେ ଶୋଇ ପଡ଼ିବଲେ
ବୁଜି ଆସିଲଣି ଆଖି ।



ଦେଖରେ ଦେଖରେ କଇଁଛ ଦେଖ ।
ଖୋଳପା ଭିତରୁ କାଢ଼ିଚି ବେକ ।
ଥିର ଥିର ହୋଇ ଯାଉଚି ଚାଲି ।
ଆଡ଼େଇ ଦଉଚି ଗୋଡ଼ରେ ବାଲି ।
ବାଲି ତଳେ ଲୁଚି ଶୋଇବ ସିଏ ।
ଦେଖରେ ଦେଖରେ କଇଁଚଟିଏ ।



ଆଃ ଅଃ ରେ ବାଘ ଛୁଆ ଡାକୁଚି ତତେ 'ଜରୁ'
ତୋ ସାଙ୍ଗରେ ଖେଳି ସେ ତତେ କରିବ 'ଝୁରୁ' 'ଝୁରୁ' ।
ଶିକାରି ବେଶେ ବନ୍ଧୁକ ଧରି ତୋ ଉପରେ ବସି ।
ବଣ ରାଇଜ ବୁଲି ଆସିବ ଠୋ ଠୋ ହସି ହସି ।
ଚଗଲା ହେଲେ ପିଠିକି ତୋ'ର ମାରିବ ସିଏ ଗୁଣ୍ଠ ।
କାନକୁ ମୋଡ଼ି, ନାକକୁ ଘଷି ପଢ଼ାଇ ଦବ ପାଠ ।



ଝୁନା ଦୁଆରେ ଫୁଟିଚି ଫୁଲ
ଝୁନ ଦୁଆରେ •ବାସ ।
ଝୁନ ଘରେ ଗାଈ ଦୁହାଳ
ଝୁନା ଘରେ ଚାଷ ।
ଝୁନ ଆଣିବ କ୍ଷୀର, ଛେନା
ଚାଉଳ ଦବ ଝୁନା ।
ଚୂଲି, ହାଣ୍ଡି, ସବୁ ଝୁନାର
କିଛୁ ନ ହେବ ଊଣା ।
ଝୁନ କରିବ ଖିରି ।
ଏମିତି ମିଷ୍ଟି ଖାଇବେ ଦୁହେଁ
ପତର ଯିବ ଚିରି ।



ଦୂର ପରବତ ସୁନ୍ଦର ଦିଶେ ।
ମଥାଟି ତାହାର ଆକାଶେ •ମିଶେ ।
ପାହାଡ଼ର ତଳେ ଯୋଉଟା ବିଲ ।
ହାରୁ ମାଛ ନେଇ ଉଡ଼ିଲା ଚିଲ ।

ଟଲରେ ଟଲ ରୁ ସିଆଣା ଖିର ।
ମାଛ ମୋ'ର ନେଇ ଗଲୁ ରୁ ସ୍କୁଲ୍ ।
ବୋଉ ଗାଳିଦେଲା କାହିଁରେ କଣ ।
ବାପା ମୋଡ଼ିଦେଲେ ରାଗରେ କାନ ।
ସିଆଣା ପଣ ତୋ ଦେବି ଛଡ଼େଇ ।
ଅ, ଆ, ପାଠ ଦେବି ପଢ଼େଇ ।



'ଇଟିକିଲ' ଆଉ 'ମିଟିକିଲ'
ପଳେଇଲେ ଦିନେ ଫିଟି କରି ।
ଭାଙ୍ଗି ଦେଲେ ମୋ ବାଡ଼ି ।
ଖାଇଲେ ବେତ ମାଡ଼ ।



ଉଡ଼ା ଜାହାଜରେ ଉଡ଼ା ଜାହାଜ ରୁ
ଉଡ଼ି, ଉଡ଼ି, ଉଡ଼ି, ଯିବୁ ।
ବାପା ମୋ ଅଛନ୍ତି ଦରିଆ ସେପାରେ
ମୋ ଚିଠିଟି ତାଙ୍କୁ ଦବୁ ।
ସିଏ ଯେବେ ଦେବେ ଚିଠି କ ପତର
ସହଳ ଆସିବୁ ଆଣି ।
ଚାହିଁ ରହୁଚ ମୁଁ ତୋହର ବାଟକୁ
ପହଞ୍ଚିବୁ ମନ ଜାଣି ।



ଟିକି ଚଢ଼େଇରେ ଟିକି ଚଢ଼େଇ
ସୁନା ଫୁଲ ତତେ ଦେବି ଗଢ଼େଇ ।
ଫୁଲର ମଝିଟି ପଥର ବସା ।
ଚାହିଁ ଚାହିଁ ଆଖି ହେଲାଣି କଷା ।
କଷାତ କଷାରେ ହରିଡ଼ା କଷା ।
ଆଉ ସବୁ କଷା ଫସର ଫସା ।
ଫସର ଫାଟିଲା ପଡ଼ିଲା ଖସି
ଟିକି ଚଢ଼େଇଟି ଦେଏରେ ଧସି ।



ନାରଙ୍ଗୀ ଖାଇରେ ନାରଙ୍ଗୀ ଖାଇ ।
ମୋ ଲୁନା ବସିଛୁ ତୋ ବାଟ ଚାହିଁ ।
ନଈରେ ପଡ଼ିଚ ଅକାଳ ସୁଅ
ଶୁଖି ଗଲାଣି ମୋ ପୁଅର ମୁହଁ ।
ଆର-ପାଖରେ ତା ଘରାତ ଗାଆଁ ।
ଯିବ ପରା ସିଏ ଫିଟା ତୋ ନାଆ ।
ପାଣ କର ଦଅ ନକର ଡେର
ଆଜି ଗଲେ କାଲି ଆସିବ ଫେର ।



ଅଟର, ମଟର, ସଟର ସେଁ
ସାତ ଚକୁଳ ଚହଡ଼ ଚେଁ ।
"ଗୋଟିଏ ଖାଇବି' କହିଲା ଲୁନା ।
"ମୋ ଭାଗ ଦୁଇଟି" କହିଲା ମୀନା ।
ବାପା, ମାଆଙ୍କର ଆଉ ଚାରେଟି ।
ବଳେଇ ଚାହିଁଲା ଆଖି ତରାଟି ।
''ତା' ଭାଗ ଚକୁଳି କୁଆଡ଼େ ଗଲା ।
କଅଣ ଆଉ ସେ ଖାଇବ ଭଲା ।



ଦୀପାବଳି ଦିନ "ଜିତୁ ବାବୁ ପାଇଁ
ଜେଜେ ଆଣିଥିଲେ ବାଣ ।
ତାଳ ଫଟକାର ଢୋ ଢୋ ଶୁଣି
ବୁଜି ଦେଲା ସିଏ କାନ ।
ଝର, ଝର, ଝର ଚକ୍ରବାଣ ଦେଖି
ତା'କୁ ସେ ଧରିଲା ନାହିଁ ।
'ଫୁଲଝର' ଆଉ 'ଡ଼ଆସିଲ୍' ବାଣ
ମାରିଲା ସେ ଧାଇଁ ଧାଇଁ ।



ଚେଙ୍ଗ, ବେଙ୍ଗ ଦୁହେଁ ଘରାଡି ବସିଲେ
ବାଣ ଗଡ଼ିଆର କୂଳେ ।
ଚେଙ୍ଗର ପିଠିରେ ଲଦି ହୋଇ ବେଙ୍ଗ
ଗଡ଼ିଆ ଗୋଟାକ ବୁଲେ ।

ଗଡ଼ିଆରେ ଗୋଳ ପାଣି ।
'ଚୁଙ୍ଗୁଡ଼ି'ର ପୁଅ ଚୁମ୍ବି ପଳେଇଚ
"ଚୁଙ୍ଗୁଡ଼ା ଯାଇଚ ଆଣି ।
'ନଙ୍ଗୁଡ଼ା' ପୁଅର ନାଆଁ ।
ବାଟ ଚୁଲି ଚୁଲି ଶୋଇ ଯାଇଚ ସେ
କରିଦେଇ ଏତେ ଆଁ ।



ଶଂଖ ବଜେଇଟି ଅଇଲା ।
ଏଣିକି ତେଣିକି ଚହିଁଲା ।
ଝରକା ବାଟେ ସେ ଡେଇଁଲା ।
କ୍ଷୀର ବଢ଼ାଟିକି ପାଇଲା ।
ଅଖି ବୁଜି ବସି ପିଇଲା ।
ମାଛ ଭଜା ଥିଲା ଖାଇଲା ।
ଚୁଲି ପାଖେ ଯାଇ ଶୋଇଲା
ଆମ 'ଜଗୁ' ଦେଖି ଧାଇଁଲା ।
ବାଡ଼ି ଧରି ତା'କୁ ମାଇଲା ।
କେକେ ମାଆ ଦେଖି କହିଲା
"ତା'ର କି ଦୋଷ ହୋଇଲା" ?
ତୋ 'ବୋହୂ'ତ ଖୋଲା ଥୋଇଲା-
ପଶୁ ଜାତି ପିଏ ଖାଇଲା " ।
ଏତିକିରେ କଥା ସଇଲା ।



ଘୁମୁ ଘୁମୁ ଘୁମୁରେ ପାରି
ପାରି ଛଡ଼ିଗଲୁ ନଦେଲୁ ଧରି ।
ପାରି ଉଡ଼ିଗଲୁ କୁଆଡ଼େ କାହିଁ ।
ଦିନ ଚାଲିଗଲା ତୋ' ବାଟ ଚାହିଁ ।
ମାଡ଼ି ଆସିଲାରେ ଅନ୍ଧାର ରାତି ।
ପାରି ସେଠି ତୋ'ର ନଥିବେ ସାଥି ।
ଖରି ଯାଇ ପଡ଼ି ଗଲାଣି ତରି ।
ଏକୁଟିଆଟି ତୁ ଡରିବୁ ପରି ।
ଝୁରି ହେଉଚି ମୁଁ ତୋହରି ପାଇଁ ।
ତୋ ଲାଗି ଆଖିରେ ନିଦ ମୋ ନାହିଁ ।



ଯାଉ, ଯାଉ, ଯାଉ, ନ ଯିବ ତୁ ଆଉ
ଆରେ ମୋ ଡାମରା କୁଆ' ।
ଅଧାର ଦଉଛି ଖାଇ ଦେଇ ତା'କୁ
ବେଗେ ଉଡ଼, ଉଡ଼ି ଯାଆ ।
କଟକ ମହର 'କାଠ ଯୋଡ଼ି' କୂଳ
ସେଇଠି ମୋ ମାମୁଁ ଘର ।
ସେଇ ଘରଟିର ମଝି ଅଗଣାରେ
ବସିଥିବେ ମାଇଁ ମୋର ।
ବିଦେଶରୁ ଫେରି ଆସିଥିବେ ଯେବେ
ମାମୁଁ ମୋର କୁଟୀ ଦିନେ
କହିବି କାହାରେ ! ତାଙ୍କ କଥା ମୋ'ର
ପଡ଼ୁଛି ବହୁତ ମନେ ।



ଆ'ରେ ମେଘ ଆ' ଆ'ରେ ମେଘ ଆ',
ଟୁପୁରୁ ଟୁପୁ, ଝୁପୁରୁ ଝୁପୁ ଗୀତଟି ତୋ'ର ଗାଆ ।
ହଉଛି ମତେ ଗରମ ଭାରି,
ଖରାରେ ମୁଁ ପାରୁନି ସହି ।
ଦେହରୁ ମୋର ବହୁଛି ଝାଳ ।
ମନ ଜମାରୁ ହେଉନି ଭଲ,
ହେମାଳ ବାଆ ସାଥିରେ ଆଣି ବରଷି ଦେଇ ଯାଆ
ଆ'ରେ ମେଘ ଆ—



ନାଲି ଗୁଲୁ ଗୁଲୁ ସାଧବ ବୋହୂ,
ନାଲି ପାଟ-ପିନ୍ଧି କୁଆଡ଼େ ଯାଉ ?
ମାରେ ଘଡ଼ଘଡ଼ି ମାରେ ବିଜୁଳି,
ଝର ଝର ପଡ଼େ ବରଷା ଝଣ ।
ପାଣି କାଦୁଅରେ ପୁଲୁଛି ବାଟ,
ଅସନା ହବ ତୋ ନାଲିଆ ପାଟ ।
ଓଦା ହେଲେ ତତେ କରିବ ଜର,
ଜରକୁ ତୋହର ନାହିଁକି ଡର ?



ଶୀତ ହେଲେ ଘର ଖଣ୍ଡରେ ବସିବା ଗୁଳ,
ଗ୍ରୀଷ୍ମକୁ ଆସିବା ଦହନକୁ ବନ୍ଦିଲେ ଝାଳ ।
ବରଷା ହୋଇଲେ ଛତାଟି ମଥାରେ ଦେଇ,
ଚାଲୁଥିବ ଯେବେ ଓଦା କେବେ ହେବ ନାହିଁ ।



ଟଡ଼ିଆ ପାଗ
ଏମିତ ପାଗକୁ ବାଦାମ୍ ଭାଗ ।
ବାଦାମ ସାଙ୍ଗକୁ ମୁଢ଼ି ନଡ଼ିଆ ।
ବାରମଜା ଥିଲେ ଘର ବଢ଼ିଆ ।
ଗରମା, ଗରମ ପିଆଜି, ବରା ।
ଟକଳା ପାଟିରେ ଫୁଟେ ଟାକରା ।



ଅଜାଟିର ନାଁ 'ଜଟିଆ'
ନାତିଟିର ନାଁ 'ହଟିଆ' ।
ଘରଟି ତାଙ୍କର 'ପଟିଆ'
'ହଟିଆଟି' କଟ କଟିଆ ।
ଦରଣ୍ଡେ ଅଜାଙ୍କ ବଟୁଆ ।
ଦୁଇଆଁ ବାହାର ମଠୁଆ,
ଖାଇ ସେ ଧୂଏଁନା ତାଟିଆ ।
ଧରୁଥାଏ ଘର ଚଟିଆ,
ସଞ୍ଜ ହେଲେ ଧରେ ଖଟିଆ ।
ଅଜା କହିଲେ 'ରେ ହଟିଆ'
ହେଲୁ ନାହିଁ ତୁ'ତ ପାଠୁଆ ।
ଓଳେଇବୁ କ'ଣ ଝାଟୁଆ ?
ହସି କହିଲା ସେ 'ହଟିଆ'
''ନପଢ଼ିଲେ ହେବ ନାଟୁଆ ।
ନହେଲେ କଦଳୀ କାଠିଆ''
ଗୁଣ୍ଡକର ହେବ ହାଟୁଆ ।



ଆମର 'ଛବି'ଟି ସୁନା ନାକୀ ଝିଅ
ସତେ କି ସରଗ ଚାନ୍ଦ ।
ଟାଣ କଥା ପଦେ ଶୁଣିଲେ କାହାଠୁ
ମାଡ଼େ ତା'କୁ ଭାରି କାନ୍ଦ ।
ବାପା, ଭାଇ, ମାଆ, କାହାଠାରୁ ଯେବେ
ମିଠେଇଟିଏ ସେ ପାଏ ।
କାନ୍ଦୁରା ମୁହଁ ତା ହସ ହସ ହୁଏ
ନଠେଇ କରି ସେ ଖାଏ ।



ଆମ କୁନ୍‌ମୁନ୍ ଭାରି ଟାଉକା ।
ଉଣ୍ଡ଼ାରେ ତା'ର ଭାରି ସଉକା ।
କୁକୁଡ଼ା ଦେଖିଲେ ଡରେ ।
ଟିକି ହାତଟିରେ ବାଡ଼ିଟିଏ ଧରି
"ହାଉସ୍" "ହାଉସ୍" କରେ ।



ମୁନ୍ନି ବାହାଘର, ଭାରି ଖୁସି ହୋଇ
ଘର ସଜାଡ଼ୁଛି ପୁନ୍ନି ।
ଲୁଗା ଯୋଡ଼ାଟାଏ ମିଳିଲାନି ବୋଲି
'ଭାଲୁଆ' ବସିଛି ରୁଷି ।
ଦୋଳ-ମକୁଟକୁ ଲଗାଇ ମଥାରେ
ମୂଷା ହୋଇ ବରବେଶ ।
ମୁନ୍ନିର ମନରେ ଖୁସି ନାହିଁ ଜମା
ଯିବ ବୋଲି ଦୂର ଦେଶ ।
ଘର, ବେଭାରର ସଜଡ଼ା ଚାଲିଛି
ବାଜୁଛି ମହୁରି, ବାଜା ।
ବାହା ସରିଗଲା, ବର ବାହୁଡ଼ିଲା
ସଭିଙ୍କର ମନ ତାଜା—



ଭୋଇଲି ପୁଅର ଜନମ ଦିନରେ
କାଉ ଦିଏ ଫୁଲ ଫଳ ।
କୁନା, କୁନି ଦୁହେଁ ପାଠ ପଢ଼ା ସାରି
ଆସୁଛନ୍ତି ଝୁଲି, ଝୁଲି ।

ବାର ପଚ୍ଛଆଡ଼େ ବାଉଁଶ ବୁଦା ଲୋ
କାଟିଗଲ୍ ସରୁବତା
'ରୁବି' ଯାଉଥିଲା ଖରାଟାରେ ଚାଲି
ଭାଇ ଧରିଥିଲେ ଛତା ।
ଛତାରେ ରେଶମ ଜନା ।
ଢନ ରଥେ ବଳେ ଢନ ଠାକୁରଟି ମନଥନ୍ତୁ କର୍ ଅନା ।



ଶୀତ ସକାଳରେ ଜେଜେଙ୍କ ସାଥିରେ
କୁନା ପୋଉଁଥିଲା ଖରା ।
ମାଆ ଥୋଇଦେଲେ ଥାଳିଟିରେ ଆଣି
ଚକୁଳି, କାକରା, ବରା ।
ଜେଜେ-ନାତି, ଦୁଇଜଣ ।
ହାତ ମୁହଁ ଧୋଇ ହସ ଖୁସି ହୋଇ
ଖାଇବାରେ ଦେଲେ ମନ ।



ବଗ ବଗୁଲି
ଇଟା ଥୋଇ ଦୁହେଁ ପାରଲେ ଚୁଲି ।
ରାନ୍ଧିଲେ ଶେଉଳ ମାଛର ଝୋଳ ।
ଝୋଳ ଦେଖି ବଗ ହୋଇଲା ଭୋଳ ।
ସବୁଯାକ ଦେଲା ଖାଇ ।
ମୁହଁ ଧୋଇ ଧାଇ ଉଡ଼ି ପଳେଇଲା ।
ବଗୁଲି ବସିଛି ଚାହିଁ ।



'ପୁସି' ଆଉ 'ଭାଲୁଆ'
ପୁଷି ଖାଏ 'ରେହୁମାଛ'—'ଭାଲୁଆ'ର ହାଲୁଆ
ଯାତ ଦେଖିବାକୁ ଦିନେ ଦୁହେଁ ଯାକ ଚାହିଁଲେ ।
ଚଉକି ଉପରେ ବସି ଟେବୁଲରେ ଖାଇଲେ
"ରେହୁ ମାଛ" ହାଲୁଆ ।
ସବୁ ସରିଗଲା ପଛେ ପେଟ ଦିଶେ ଖାଲୁଆ ।



କିଆ ବୁଦା ତଳେ 'ବିଲୁଆ' ହୁଆ ।
ଡାକ ଦେଉଥିଲେ ହୁକ୍କା—ହୁଆ
ବହି, ଖାତା, ମାନ ହାତରେ ଧରି
ଭୁଆ ଯାଉଥିଲା ଇସ୍କୁଲ କରି ।
ଡାକିଲା "ଆସରେ ପଢ଼ିବ ପାଠ
ଇସ୍କୁଲ ଏଠାରୁ ଅଳପ ବାଟ ।



ବାହା ବାହା ବାଃ କୁନିର ଆଜି
କଣ୍ଢେଇ ବାହାଘର ।
'ମିନି'ର ଝିଅ କନିଆଁ ଆଉ
'କୁନି'ର ପୁଅ ବର ।
ଶଙ୍ଖ ବାଜିବ, ବାଜା ବାଜିବ
ପଡ଼ିବ ହୁଳି ହୁଳି ।
ବୋହୂକୁ ନେଇ ଆସିବ ବର
ଦୋଳାରେ ଝୁଲି ଝୁଲି ।
ବୋହୂ ପରଶା ଖାଇବ 'କୁନି'
ପିଢ଼ା ପକେଇ ବସି ।
ହାତଟି ଧୋଇ ପଡ଼ିବ ଶୋଇ
ବୋହୂଟି ଦବ ଘଷି ।



ବାରି ପଛଆଡ଼େ ଗଛର କୁଞ୍ଜ
କୁଞ୍ଜ ପାଖେ ହେଲା ପୁଷିର ପୁଅ ।
ପୁଅ ଦଶୁଥିଲା ଫୁଲଟି ପରି
ଜନ୍ଦା କାମୁଡ଼ିଲା ରଟ୍ କରି ।
କଇଁ କଇଁ ହୋଇ କାନ୍ଦିଲା ପୁଅ
ମେଘ ଧାର ପରି ଝରିଲା ଲୁହ ।
ପୁଅର ଲୁହକୁ ପୋଛିଲା ମାଆ
କୋଳରେ ବସାଇ କହିଲା "ଆହା" !
ଖିର୍ସ' କରିଥିଲା ଗୁହଳ ଆଣି
ଖୋଇଦେଲା ପୁଅ ମନକୁ ଜାଣି ।
ଦୋଳିରେ ବସେଇ ଝୁଲେଇ ଦେଲା
ତେବେ ଯାଇ ପୁଅ ଚୁପ୍ ହେଲା ।



ଗଛତ ଗଛ—ନଡ଼ିଆ ଗଛ
ଗଛରୁ ପଇଲା ଦାଆ ।
ପାଟ କନାଟିଏ କାନ୍ଧରେ ପକେଇ
କୀର୍ତ୍ତନ କରି ଯାଆ ।
ଖୋଳ କରତାଳ ବଜା
ଝୁଣ୍ଟି ବଡ଼ଦାଣ୍ଡେ ନାଚ ନାଚ ଯାଆ
ଦେଖିବେ ଠାକୁର ରଜା ।

□

ଆଷାଢ଼ ମାସରେ ଫୁଟଇ କଥା
ଚଗଲା ଗୁଣ୍ଡୁଚ ମାରୁଛୁ ଡିଆଁ ।
ମାଡ଼ି ଆସିଲାଣି ବରଷା ବାଆ
ଆ'ରେ ଗୁଣ୍ଡୁଚ ଘରକୁ ଆ' ।
ଭିଙ୍ଗି ଯାଇ ଯେବେ ଗଛ ତୋହର
ତଳେ ଲୋଟିଯିବ ବସାଟି ତୋ'ର ।
ଆମଘରେ ଶେଯ ଦେବ ମୁଁ ପାର
ଖାଇ, ଶୋଇଯିବୁ ଘୁଙ୍ଗୁଡ଼ି ମାର ।

□

ଆମ ପୁଅ ଗଲେ ପାଠ ପଢ଼ିବାକୁ
ଘର ଲାଗେ ଖାଲି ଖାଲି ।
ଶୁଭିଯାଏ ତା'ର ହସ ହସ କଥା
ଦିଶୁଥାଏ ତା'ର ଗାଲି ।
ଘଣ୍ଟାକ ଲାଗଇ ଯୁଗଟାଏ ପରି
ତା ଫେରି ବାଟକୁ ଚାହିଁ ।
ସିଏ ଆସିଗଲେ ଆମ ଘରେ ସତେ
ଜହ୍ନକ ଆସଇ ଉଇଁ ।

□

ମୂଷା ଖାଉଥିଲା ଆରିଷା ପିଠା
ବିଲେଇ ମାଗିଲା "ଦେଏ ତୁ ଦ'ଟା ।"
କିଣିଚି ମୁଁ ନୂଆ ମଟର ଗାଡ଼ି
ସହର ବୁଲୁଚି ତହିଁରେ ଚଢ଼ି ।
ତତେ ମୁଁ ସାଥିରେ ବୁଲେଇ ନେବି ।
ନୂଆ ନୂଆ ଚିଜ ଦେଖେଇ ଦେବି ।

□

ତାଳଗଛ ପର ସଦେଇ ବୁଢ଼ା
ବକୁଥାଏ ବୁଲ ମୂଢ଼ି ଉଖୁଡ଼ା ।
ହନୁ ଆସି ଦନେ କଣିଲ ମୂଢ଼ି
ଦେଖୁ ଦେଖୁ ତା'ଙ୍କୁ ବୁଢ଼ାର ବୁଢ଼ୀ ।
ବାଡ଼ିଟାଏ ଧର ଆସିଲ ଧାଇଁ
ହନୁ ପଳେଇଲ ବୁଢ଼ୀକୁ ଗୁହିଁ ।



ମେଘରେ ମେଘ ପାଣି ଦେବ ।
ମାଟି ସେ ପାଣି ଶୋଷି ନେବ ।
ଶୋଷି ନେଇ ଗଛ ଉଠା ।
ଫଳରେ ପୂରୁ ଯେତେକ ଚୋଟା ।
ଆମର ପୁଅ ଖାଉ ତା ଫଳ ।
ବଢ଼ୁ ତାହାର ଦେହର ବଳ ।
ଶକତ ହଉ ସତେକ ଲୁହା ।
ପାଲଟି ଯାଉ ବୀରର ଛୁଆ ।



ଦେଖରେ ଦେଖ ଶୁଆ ।
ଛକନ୍ତି ତା'କୁ ଭୁଆ ।
ଭୁଆର ଦନ୍ତ କଳା ।
ପିନ୍ଧିଚ ଜାମା ଧଳା ।
ପାଦରେ ବଳା ତା'ର ।
ବେକେ ତୁଳସୀ ମାଳ ।
କପାଳେ ଠିଆ ଚିତା ।
ଜପୁଚ ରାମ ସୀତା ।
କହିଲ ଦେଖି ଶୁଆ ।
ଇଏ କି କଥା ନୂଆ !



ଆମର ପୋଷା ପୁଷି
ମନଟି ତା'ର ଖୁସି ।
ମୂଷାଙ୍କ ସଖ୍ୟ ହବ ।
ସିଏ ସେଠାକୁ ଯିବ ।

ଭୋକ ଲାଗିବ ଯେବେ ।
ସେ'କ ଗୁଡ଼ବ କେବେ ? ।
ମୂଷା ଗୋଟିଏ ଧର ।
ଧାଉଁବ ଚଟ୍ କର ।



ଲଡ଼ୁ ଗୋଟିଏ ନେ'ରେ 'ଜଜ' ଲଡ଼ୁ ଗୋଟିଏ ନେ' ।
ପୁଅର ବଲ୍ ବ୍ରଜ ଯାଇଚ ଖୋଜି ଆଣି ତୁ ଦେ ।
ମାଛ ଖଣ୍ଡିଏ ନେଏ ଲେ ପୁସି ମାଛ ଖଣ୍ଡିଏ ନେ ।
ପୁଅ କାନ୍ଦୁଚି ଅଟ୍ଟ ହୋଇ ବୁଝେଇ ତା'କୁ ଦେ ।
ଘାସ ବଡ଼ାଇ ଦା'ରେ ଘୋଡ଼ା, ଘାସ ବଡ଼ାଇ ଖା ।
ପୁଅକୁ ତୋ'ର ପିଠି ଉପରେ ବସାଇ ବୁଲି ଯା ।
ପେଜ ସାଙ୍ଗରେ ପିଢ଼ଆ, ଚୂନ, ଖାଇ ଦେଏ ତୁ ଗାଈ ।
ବାଲ୍ଟି ଭରି କ୍ଷୀର ଦୁହିଁବ ଆମର ପୁଅ ପାଇଁ
ଆ ଚଢ଼େଇ, ଆ ଭଅଁର- ଆ ପରଜା ପତି ।
ସଭିଏ ତୁମେ ଆମ କୁନାର ଖେଳ, ତୁଳର, ସାଥି ।



ଜଳ ଗୋଡ଼ଆ ବଗ
ଚୁଲଇ ଡଗ ଡଗ ।
ମାଛକୁ ଥାଏ ଛକ ।
ପଡ଼େ ନାହିଁ ସେ ଥକ ।
ଦେଖିଲେ ଗୋଟେ ଟାଆକୁ କଶ ଗିଳି ଦିଏ ସେ ଆଗ ।



ଦେଉଳ ନାକରେ ଗୁଣ୍ଡା ।
ବଳେଇ କରୁଚ ଦିଅଁ ପୂଜା ବସି ।
ମୂଷା ଧୂପ ଦିଏ ଝୁଣା ।
ଚୁଚୁନ୍ଦୁରୀ ଦୀପ ଜାଳେ ।
'ଡମରା କାଉ'ର ଆଖି ଲଖିଅଛି
ଲଡ଼ୁ, ଗଜା, ଭୋଗଠାରେ ।



ବଗ ଯାଇଥିଲା ନଈକି ଗାଧୋଇ
ଧରିଆଣିଥିଲା ମାଛ ।
ବଗ୍ରଦ କରିଲା ବଗୁଲୀକୁ ଡାକ
"ସଅଳ, ସଅଳ ଚାଛ ।"
ବଗୁଲୀ ବାଛୁଲା ବସି ।
ମାଟିଆ ଚଲଣା କେମିତ ଦେଖିଲା
ଝାମ୍ପି ନେଇଗଲା ଆସି ।



ମୋ ମୁନ୍ନା ଖେଳିବ ଦ୍ୱୋଳି ।
ଅବିର ମୁଠାକ ଅଜା-ଆଈଙ୍କର
ମୁଣ୍ଡରେ ଦେବ ସେ ବୋଳି ।
ଆସିଗଲେ ତା'ର ସାଥି ।
ପିଚକାରୀ ଧରି-ରଙ୍ଗ ପାଣି ଭରି
ଖେଳରେ ଯିବ ସେ ମାତି ।



ଦୁଇଟି ଖାଇ ଦୁଇଟି ବୁଢ଼ା ।
ଜଣେ, ସ୍ତ୍ରେବାଏ ଚୂଡ଼ା ।
ଜଣେ ଖାଏ ଆଶପା ।
କେହ୍ନ ନାହିଁ ତାଙ୍କ ମରସା ।
ଦୁହେଁ କରିଲେ ସୁପ ।
ଦୁହେଁ ବାଛୁଲେ ଘାସ ।
ଅମଲ କଲେ ଧାନ ଗହମ
ଚଳିଲେ ବାରମାସ ।



ଧୋ'ରେ ବାଇଆ ଧୋ'
ଯେଉଁ କଆସ୍ତରେ ଗହ୍ଲ ଧାନରେ
ସେଇ କଆସ୍ତରେ ଶୋ—
ଆମ ବୁଥ ଭତେ ଡାକିବ ଯେବେ ।
ଉଠି ଆସିବୁ ତୁ ସହ୍ଲ ତେବେ ।
ମହିଁ ଅଗଣାରେ ପାରିବ ସପ ।
କେଜେମା କହିବେ ଶୁଣିବ ଗପ ।



ବେଙ୍ଗୁଲି ବେଙ୍ଗୁଲି ଦେଏ ଲୋ ପାଣି ।
ମାଆ ରଷିଚନ୍ଦ୍ର କାକର ଗୁଣି ।
ବାପା ଅଣିଚନ୍ଦ୍ର ଝମିକ, ଗଜା ।
କେକେ କଣିଚନ୍ଦ୍ର କଟକା ଖଜା ।
ଖୁଡ଼ୀ ଭଜଚନ୍ଦ୍ର ଗରମ ମୁଢ଼ି ।
ମୁଆଁ ବଳଚନ୍ଦ୍ର ଜେଜେମା ବୁଢ଼ୀ ।
ତୁଉ, ମୁଁଉ ଦୁହେଁ ଖାଇବା ବସି ।
ବାରରୁ ତୋଳିବା କାକୁଡ଼ି କସି ।



ଅଳ୍ପ ପତର କ ସାରୁ ପତର ଲୋ
ପବନ ହଲାଏ ମଥା ।
ଲୁନ ଯାଉଥିଲା ବରଷା ବେଳେ ଲୋ
ଧଣଥିଲା ନାଲି ଛତା ।
ଛତା ବୁଜି ଦେଇ ରଖ ।
ମାଆ ଗ୍ରଜ୍ୟୁଚନ୍ଦ୍ର ନଇ ଇଲସିଲୋ
ଲୁନା ପାଟି ଟକ ଟକ ।



ଯାହାକୁ ଯିଏ ।
ଆମ ଲୁନ ପାଇଁ ଖେଳନା ଟିଏ ।
ପୁଜା ପାଇଁ ଫୁଲ-ଭୁଜାକୁ-ମିଠା
ବାହ୍ୱା ବରତକୁ ଆରସା ପିଠା ।
ଗଛ ପାଇଁ ଫଳ-ଗୁଟକୁ ପାଠ
ଗ୍ରୁଷ ପାଇଁ ହଳ 'ନାଆ'କୁ 'ଘାଟ' ।
'ପାନ' ଖାଇବାକୁ 'ଗୁଆ'ର ଲୋଡ଼ା
ଖଲା ପାଇଁ ହଲା-ଘୁଲକୁ 'ନଡ଼ା' ।
'ଶୀତ' ପାଇଁ ଶେଯ 'ପୁଷ'କୁ ମୁଆଁ
ଗାଇ ପାଇଁ ପେଜ 'ମଶା'କୁ ଧୂଆଁ ।
ଘୋଡ଼ାଲାଗି ଘାସ-ଯୋଗୀର ଥାଳ
କ୍ଷେତ ପାଇଁ ଗ୍ରୁଷ ତୂଲକୁ ଜାଲ ।



"ହଠ୍‌ରେ 'କାଳିଆ' ଘାସ ଖାଇବୁ
ଘାସ ଖାଇସାରି ବିଲକୁ ଯିବୁ ।
ବିଲକୁ ଗଲେ ତୁ କରିବୁ ହଳ,
ଟାଣ ମାଟି ହେବ ଉପର ତଳ ।
ନରମ ମାଟିରେ ଧାନ ବୁଣିବା
ଧାନ ପାଚିଗଲେ କାଟି ଆଣିବା ।
ଧାନରୁ କରିବା ଗୁହାଳ କୁଣ୍ଡା
କୁଣ୍ଡା ପେଜ ଖାଇ ହେବୁ ତୁ ହୁଣ୍ଡା ।"



ମିଆଉଁ ମିଆଉଁ ବିଲେଇ ବୋବାଏ
କୁକୁର ବୋବାଏ ଭୌ ।
ଜଆ ବୁଢା ତଳେ ବିଲୁଆ ଗାଢରେ
ଭୁକ ଉଠେ ହୁକେ ହୋ ।
କା'ଆ, କାଆ, କାଆ 'କାଉ'ଗ୍ରବଦଏ
'କୋଇଲି'ର କୁହୁ-କୁହୁ
ଆମ କୁନା କଥା ଲାଗେ ଏଡ଼େ ମିଠା
ସତେକି ଅସଲି ମହୁ ।



ଘବଳ କୁକୁଡ଼ା ଘବଳ କାଉ
କୁକୁର ଡାକିଲା ଭ୍ୟାଉଁ ଭ୍ୟାଉଁ ।
କୁନ ବାଛୁରିଟି ହମ୍ବା ରଡ଼ିଲା
ମୋ ପୁଅ ନିଦରୁ ଉଠି ପଡ଼ିଲା ।
ଦେଖିଲି ଆକାଶେ ଗୁହିଁ
ସୃରୁଯ ମାଛିଚ ଖରା ଫୁଲ ଝରି
ଅନ୍ଧାର ଗଲାଣି କାହିଁ !



ରେଲଗାଡ଼ି ଗାଏ ଗୀତ କୁକ୍ କୁକ୍ କୁକ୍ ।
ଯାଏ ମାଡ଼ି ଧୂଆଁ ଗୁଡ଼ି ଭୁକ୍ ଭୁକ୍ ଭୁକ୍ ।
'କାଠହଣା' କାଠ ହାଣେ ଠୁକ୍ ଠୁକ୍ ଠୁକ୍ ।
ପାଣି କୂଳରେ ବେଙ୍ଗ ଡ଼ିଏଁ ଫୁକ୍ ଫୁକ୍ ଫୁକ୍
ପଡ଼ିଲେ ମେଘ ବରଷା ଶୁଭେ ଟୁପ୍ ଟୁପ୍ ଟୁପ୍ ।

କାନ୍ଦଲେ 'ଲୁନା' ବାପା କହନ୍ତି ଚୁପ୍ ଚୁପ୍ ଚୁପ୍
ହୋଟେଲେ ବସି ଗଧିଆ ପିଏ କୋବ, ବନ୍ଦଢ-ସୁପ୍ ।

□

'ପୁମି'ର ଝିଅ ଲୁସି
ବସିଚ ଆଜ ରୁଷି ।
ଶୁଖି ଯାଇଚ ମୁହଁଟି ତା'ର
ଝରି ଯାଉଛି ଲୁହର ଧାର
ଦେ'ରେ ଜରୁ ପିଠା ଗୋଟିଏ
ଖାଇ ସେ ହେଉ ଖୁସି ।

□

ହେଇ ଦେଖ ଗୁଣ୍ଡୁଚି
ପିଠାଟିଏ ଖାଇବାକୁ ଲୁଚ ଲୁଚ ଭଣ୍ଡୁଚି ।
ଆମ ପୋଷା ବିଲେଇ
ମ୍ୟାଉଁ ମ୍ୟାଉଁ ଡଚଲେଇ
ଧାଇଁଗଲା ଧରିବାକୁ ମୂଷା ଗଲା ପଳେଇ ।
ଗଛରେ ସେ ଚଢ଼ିଲା
ପାଚିଲା କୋଳି ଗୁଡାକ ଟପ୍, ଟାପ୍ ଝଡ଼ିଲା ।

□

ଉଡ଼ା ଜାହାଜ ଉଡ଼୍ ରେ
ବୁଡ଼ା ଜାହାଜ ବୁଡ଼୍ ରେ ।
'ଜରୁ'କୁ ମୋ'ର ସାଥିରେ ନେଏ
ଦୁନିଆଟାକୁ ଦେଖେଇ ଦେ' ।
ଦରିଆ ତଳ ବୁଲେଇ ଦେ,
ସରଗ ଦୋଳରେ ଝୁଲେଇ ଦେ ।
ସାପ୍, ମୋର ସାଙ୍ଗେ ମିଳେଇ ଦେ
କୁରୁ କୁରୁ କରି ହସେଇ ଦେ,
ମୋ କୋଳରେ ଆଣି ବସେଇ ଦେ' ।

□

ଧଳା ଘୋଡ଼ା, କାଳିଆ ଘୋଡ଼ା, କସରା ଘୋଡ଼ା ଆସ
ଆମ 'ବାବୁନ' ଭୂମରି ପାଇଁ ଆଣି ଦେଇଚ ଘାସ ।
ପେଟେ ପେଟେ ଖାଆ ।
ବାବୁନ, ଲୁନ, ମିନଙ୍କି ଧରି ସହର ବୁଲି ଯାଆ ।

□

ଘଣ୍ଟା ଗୁଲଇ ଟିକ୍ ଟିକ୍
ଆମ ପୁଅର କାମଟି ଠିକ୍ ।
ଅସଲ ସତ କଥାଟି ତା'ର
କମା ସେ କାନ୍ଦେ ନାହିଁ ।
ଝଗଡ଼ା ଦିଏ ମନ୍ଥୁ ଝରଣା
ବସିଲେ ଗୀତ ଗାଇ ।
ମାଆଙ୍କ ସଙ୍ଗ ଲଗାଏ ନାହିଁ
କମାରୁ ଝିକ୍ ଝିକ୍ ।
ଲୁହ ପାଦରେ ଗଡ଼ାଇ ବଲ
ହସଇ ଫିକ୍ ଫିକ୍ ।



କହୁଚ ଚଇତ ବାଆ ।
ମୋ 'ଜରୁ' ଯାଉଚ ବରବେଶ ସାଜ
ଚମକ ଉଠୁଚ ଗାଆଁ ।
ଟୋପି, ଟୋପି ତାର ମଥାରେ ଚନ୍ଦନ ଗଳାରେ ଗଜଗ୍ରମାଳ ।
ଧୋତ, ପଞ୍ଜାବୀରେ ସୁନାର ବୋତାମ, ଆଖି କରେ ଝଲମଲ ।
ବାଜେ ଭଲ ଭଲ ବାଜା ।
କାର୍ ଭିତରେ ମୋ ଜରୁ ବସିଅଛୁ ସତେକି ଗୋଟିଏ ରଜା ।



ମେଘ ହେଲେ ଦିଏ ବଜୁଳି ହସି
'ମୁନ୍ନା' ହସେ କାଠ ଘୋଡ଼ାରେ ବସି ।
ପାଣି ପିଇ, ଦାନା ଖା'
କାଠର ଘୋଡ଼ା ଜଲଦି ଧାଆଁ ।
ଡେରି କରିଲେ ରୁ ଖାଇବୁ ମାଡ଼
ଭାଙ୍ଗିଯିବ ତୋ'ର ପିଠିର ହାଡ଼ ।



ବିଲୁଆ ଧର ପରବା ମୂଣି
କହୁଚ "ଓଧ ରଖ୍ ରଖ୍ ।"
ହନୁଠୁ ଖାଇ ଜବର ମାଡ଼
ପାଞ୍ଚ କାନ୍ଦୁଚ ସକ୍ ସକ୍

ବାଘ ଖାଇ ମାଉଁସ ପେଟେ
ବାନ୍ତ କରୁଛ ଭକ୍ ଭକ୍ ।
ବୁଢ଼ା ଭାଲୁଟି ବାବାଜି ହୋଇ
ମାଳ ଗଡ଼ାଉଛ ଠକ୍ ଠକ୍ ।
ହାଗର ନାଢ ଛାଟିଆ ଧର କ୍ଷୀର ପିଉଛ ଢକ୍ ଢକ୍
ଆଉଁସୁଛ ତା' ପିଠିକୁ ଗଧ, ଜନ୍ତୁ ଗୁହିଁଛ ବକ୍ ବକ୍ ।

□

ଅଜାଙ୍କର ମୁଁ ନାତି
'ଭାଲୁଆ' ମୋର ସାଥି
ସଙ୍ଗାତ ଶାରୀ-ଶୁଆ
ମଇନା ଗାଈ ଛୁଆ
ଭଲ ପାଏ ମୁଁ ବଗ, ବଗୁଲି, ବଣି, ଠେକୁଆ, କୁଆ ।

□

କୁଆଡ଼େ ଯାଉଚ, ବଲେଇ ନାନୀ ?
ଉଡ଼ି ଯାଉଚ ତୋ ପଣତ କାନି ।
ମୂଷାମାନେ ଦେଖି ମାରନ୍ତି ତାଳି
କହନ୍ତି "ରୁ ଭର ସୁନ୍ଦରୀ କାଳୀ ।"
ତୋ ଫଟ ଉଠାନ୍ତି କ୍ୟାମେରା ଧରି
ନ ଯାଆନ୍ତି ତଳେ ଟିକଏ ଡରି ।

□

ଉତୁଲୁ, ପୁତୁଲୁ, ଲଟେଇ
ଢୋ ଢା ବାଣ ଫୁଟେଇ ।
ଢୋଲ, ପେଁ'କାଳି ବଜେଇ
ଫୁଲରେ ମଟର ସଜେଇ ।
ଆସୁଚ ବଲୁଆ ବର
ହଳଦୀ ଲଗେଇ-ସିନ୍ଦୁର ପିନ୍ଧେଇ
କନିଆଁକୁ ସଜକର ।
ସରଲେ ଭୁଣିଆ ଚରଚ୍ଚ
କନିଆଁକୁ ନେଇ ବର ଲେଉଟିବ
ସବୁ ହୋଇଗଲେ ଫରଚ୍ଚ ।

□

ଉଲୁଲୁ, ମୁଲୁଲୁ, ପୁଲୁଲୁ, ପୁଚି
"ନେଉଳ ଦଉଡି ଧାନକୁ କୁଟି ।
ଘୁଉଳ ପାଛୁଡ଼େ ବିଲେଇ ନାନୀ
ବାଲ୍‌ଟିରେ ଗାଲୁ, ବୁହାଏ ପାଣି ।
'ଚଟିଆ' ପାରେ ଚଲି
କାଉ ଆଣୁଚି ଶୁଖିଲା ଜାଳ ଗଛରୁ ଗଛ ବୁଲି ।
ଭାତ ହେବ ଡ଼ାଲି ହେବ ହେବ ତରକାରି
ଯେତେକ ପଶୁ ଯେତେକ ପକ୍ଷୀ
ଖାଇବେ ମନ ଭରି ।
ଖାଇବା ପରେ ନାଚ, ଗୀତର ଲାଗିବ ଧୁମ୍ ଧାମ୍
ଦେଖିବ ଯିଏ ଟିକେଟ କର
ଦଶଟି ଟଙ୍କା ଦାମ୍ ।"



କଳରେ କଳ ବୋବେଇ ଦେଏ
ଷ୍ଟେର ମାନଙ୍କୁ ଷ୍ଟେବେଇ ଦେଏ ।
ମାଉସି ଭାତ ଯେତେ ତୁ ଖାଆ
ଘରକୁ ଗ୍ରୁଡ଼ି କାହିଁ ନ ଯାଆ ।
ରହିବା ପାଇଁ ଦେବି ମୁଁ ଘର
ଶୋଇବା ପାଇଁ ପଲଙ୍କ ସାର ।
ପିନ୍ଧିବୁ ଯୋତା, ଗରମ ଜାମା
ଅଣବୁ ନାହିଁ ଶୀତରେ ଜମା ।
ବରଷା ଦିନେ ତୋହର ପାଇଁ
କିଣି ଦେବି ମୁଁ ଛତା ।
ଖରା ଦିନରେ ସର୍ବତ ପିଇ
ଅଣ୍ଡା ରଖିବୁ ମଥା ।



ଅଜାଟିକୁ ଅଇଟିଏ
ନାତଟିକୁ ନାତୁଣୀଟିଏ ।
ନାତ ନାଆଁ 'ଭୋଲା'
ନାତୁଣୀ ଝୁଲେ ଦୋଲା ।

ଖେଳାର କାନ କଣ୍ଟା
ଖେଳୁ ଖେଳୁ ହଜେଇ ଦେଲା
ଅଜାଙ୍କ ପାନ ବଟା ।
ନାରୁଣି ନାଁ ସୁଲେଇ ।
ଆଉ ତା'କୁ କାଖ କରି
ଗାଁକୁ ନେଏ ବୁଲେଇ ।



ଗଧ ହୋଇଚ ଡାକ୍ତର ବାବୁ
ଡାକୁଚ ଆସ ଆସ
କଏ ଭୋଗୁଚ, ଅଣ୍ଡା-ଶରଦ
କଏ ଭୋଗୁଚ କାଶ ।
କାହାକୁ ଝାଡ଼ା, କାହାକୁ ଜର
ଔଷଧ ଦେବ ଥରକୁ ଥର
ଇଞ୍ଜେକ୍ସନକୁ ଜମା ନ ଡର ।
ଶୁଖିଲା ତୁମ ମୁହଁରେ ମୁଁ ହିଁ
ଖେଳାଇ ଦେବି ହସ ।



ଦାଆ କାଟିଯାଏ ଧାନ ।
ପୁଅ ଗୁଲୁଥିଲେ ପାଦତଳେ ତାର
ଫୁଟୁଥାଏ ଫୁଲ ମାଳ ।
ବହିଲା ଶୀତଳ ବାଆ ।
ଖନ ଖନ କରି କହିଦବ ପୁଅ
କଅଣ ତାହାର ନାଆଁ ।
ପୋଖରୀରେ ଫୁଟେ କଇଁ
ଜମାରୁ ତାହାକୁ ଡନୋଟି ବରଷ
ପଢ଼ିଲଣି ସିଏ ବହି ।
ମାଘ ମାସେ ଖର ଶୀତ ।
ଜେଜେ ମା'କୋଳେ ଗାଇଲଣି ବସି
ମଜା, ମଉଜିଆ ଗୀତ ।



ବାଇ ଚଢ଼େଇ ରେ ବାଇ ଚଢ଼େଇ ।
ଯା' ଉଡ଼ି ଯା' ଡେଣା ବାଡ଼େଇ
ମାଡ଼ି ଆସିଲାଣି ବରଷା ବାଆ ।
ଚାହିଁ ରହିଥିବ ତତେ ତୋ ମାଆ ।
ତତେ ଦେଖି ସିଏ ଦବରେ ହସି ।
କାଖ କରିନେବ ପିଠି ଆଉଁସି ।
କୋଳରେ ବସେଇ କରିବ ଗେଲ ।
ଲଗେଇ ଦବ ସେ ହଳଦୀ ତେଲ ।
ଝିଙ୍ଗା କରିଥିବ ଖୁଆଇ ଦବ ।
ବହଳ ଶେଯରେ ଶୁଆଇ ଦବ ।
ହାଇ ମାରି ରୁହ ପଡ଼ିଲେ ଶୋଇ ।
ସିଏ ଗୁଛିଯିବ ବାସନ ଧୋଇ ।



ଘର ଧୋ'ଇ ଧାଇ କରିବ ସଫା
ବାଉରୁ ତୋଳିବ ଦେଉଳି କପା ।
ଦେଉଳି କପାରେ ତଳଣା କରି
ସୂତା କାଟିଦବ ଅରଟ ଧରି
ସୂତାରେ ତୋ ପାଇଁ ଲୁଗା ବୁଣିବ
ଜନମ ଦିନରେ ପିନ୍ଧାଇ ଦବ ।



କୋଇଲି ଆଉ କାଉ
ଖାଉ ଖାଉ ଖାଇ ଦେଲେ ସେ
ହଣ୍ଡାଏ ଖୁଦ ଜାଉ ।
ହଜମ କରି ପାରିଲା ନାହିଁ
'କାଉକୁ' ହେଲା ଜର ।
"କୋଇଲି' ଯାଇ ଡାକି ଆଣିଲା
' ଡାହୁକ ' ଡାକତର ।
ପଥ୍ୟ ଔଷଧ ବରାଦ କଲା
ଡାକ୍ତର ଦେଖି ନାଡ଼ି ।
ପଇସା ନେଲା, ଘରକୁ ଗଲା
ଚଲାଇ ତା'ର ଗାଡ଼ି ।



ଗୋବର ଗ୍ୟାସ ଚୁଲି ।
କ ସ୍ଠ ଦନ ଲଗେଇ ଦଅ
ଧୂଆଁର ଦାଉ ଭୁଲି ।
ଗୋବର ଗ୍ୟାସ ବତ୍ତି
ଜଳଲେ ଘର ଦନଟି ପର
ଉଜ୍ଜ୍ୱଳ ହବ ଅଠ ।



ଘରଟି ଆମର ସଫା ସୁତୁରା
ଆମେ ସବୁ କେହ୍ନ ନୋହୁ କତରା ।
ଆମ ଲୁଗା, ଜାମା, ମଇଳା ନୁହଁ
ହସ ହସ ସଦା ଆମର ମୁହଁ ।
ଆମ ଘର, ଆମ ବଗିଚ୍ଚୁବାଡ଼
ମନ ହୁଏ ନାହିଁ ଯିବାକୁ ଛାଡ଼ି ।



ଘିର ଘିର ଘିର ବୁଲୁଚ ବଜଳ ପଙ୍ଖା
କ ଦନ କ ସ୍ଠ ଗରମକୁ ନାହିଁ ଦେଖା ।
ଟକ୍ ଟାକ୍ କର ସୁଇଚ୍‌କୁ ଟିପି ଦଅ;
ଯେତେ ପାର ସେତେ ବଜୁଳି ଆଲୁଅ ନଅ ।
ଟଜ୍ଲ ଚୁଲ କ ବଜୁଳି ପେଷଣା-ଯନ୍ତ୍ର
ତା'ଠାରୁ ବଳି ସୁବିଧା କେଉଁଠି ନାହିଁ ।



ଦରଆ ସେପାରେ ରହୁଛ ଦେଶ ।
ସେ ଦେଶକୁ ଆମେ ଯିବାରେ ଆସ ।
ସେ ଦେଶ ପିଲାଙ୍କ ସାଥି ହୋଇବା ।
ପଢ଼ିବା, ଖେଳିବା, ଗୀତ ଗାଇବା ।
ଆସିବା ତାହାଙ୍କୁ ସାଥିରେ ନେଇ ।
ଆମ ଦେଶ ବୁଲି ଦେଖିବେ ସେଇ ।



ତୁଳି ଆଣିଦଅ ରଙ୍ଗ ଆଣି ଦଅ
ତୁଳି, ରଙ୍ଗରେ କାଗଜ ପରେ
ଛବି ଆଙ୍କିବ ପୁଅ ।

ଅଙ୍କିବ ଗଛ, ପତର, ଡାଳ
ପାହାଡ଼, ନଈ, ପୋଖରୀ, ନାଳ ।
ଫୁଲ ଫଳ, ଘର, ବଗିଚା ।
ଆଉ ଯାହା ସେ କରିବ ଇଚ୍ଛା ।



ଯୁଈ, ଯାଇ, ମଲ୍ଲୀଧଳା-ଧଳା ପୁଣି ଟଗର ।
ଧଳା ହେନା, ମାଲତୀ, ଗଇଣ, ଧଳାମନ୍ଦାର ।
କାଣଚଣ୍ଡି ଫୁଲଧଳା, ଧଳା ଗଙ୍ଗ ଶିଉଳି ।
ବଗଧଳା, ଧଳାଚ୍ନ ଜାହ୍ନ ଦିଏ ଧଉଳି ।



ନାଲି କଇଁ ପୁଣି ନାଲି ମନ୍ଦାର
ଦେବୀଙ୍କ ମଥାରେ ନାଲି ସିନ୍ଦୁର ।
କୁକୁଡ଼ା ମୁଣ୍ଡର ମକୁଟ ନାଲି ।
ନାଲିଆ ରକତ, ନାଲିଆ ଜାଳି ।



ବେଳ ବୁଡ଼ିଲେ, ଚଉରା ମୂଳେ
ଦୀପଟି ମାଆ ଦଅନ୍ତି ଜାଳି
ଆମର କୁନା ଓଲଗି ହୁଏ
ଦିଅଁଙ୍କ ପାଖେ ଜଣାଣ ବୋଲି ।
ଆଲୁଅ ଜାଳି, ସପଟି ପାରି
ସିଲଟ ଧରି ବସଇ ପଢ଼ି ।
ପଢ଼ା ସରିଲେ ଖାଇସାରିଲେ
ଶେଯ ଉପରେ ପଡ଼ଇ ଗଡ଼ି ।
ଉଠଇ ଯାଇ ପାହିଲେ ରାତି
ଗାଇଲେ ଜାଉ କଜଳ ପାତି ।
ଗଛ ଛୁଇଁଲେ ନାଲିଆ ଖରା
ବଗିଚା ହେଲେ ଫୁଲରେ ଭରା ।



ଜାନ ନାହିଁ ଧନ ଆଖିକି ମଳି
ହାତରୁ ଆଖିରେ ଲାଗିବ ଧୂଳି ।

କଇଁ କଇଁ ହୋଇ କାନ୍ଦବୁ ଯେବେ ।
ଦାନ୍ତଟିକୁ ବଳ ହଟିବ ତେବେ ।
ଚଳେ ଗଡ଼ିକରି କାନ୍ଦଲେ ଝିଅ ।
ଧୂଳି ଧୂସରିଆ ହଣିବ ଦାନ୍ତ



ଘର ଚଟିଆ ରୁ ଆ'ରେ ।
କୁନିକୁ ହସେଇ ଯା'ରେ ।
ନାକ ସଜେଇ ମୋ କୁନିଟି
ହେଉ ନାହିଁ ଜମା ରୁନିଟି ।
କୁନିକୁ ଦେଲେ ରୁ ହସେଇ ।
(ତତେ) ଦୋଳରେ ଦେବ ମୁଁ ବସେଇ ।



ତାଳ ତାଳରେ ତାଳ ତାଳ ।
ରୁନି ହେଇଯାଆ ତାଳ ମାଣ ।
ପୋଛୁ ଦଉଚ ମୁଁ ଲୁହ ତୋ'ର ।
ଶୋଇପଡ଼ ଧନ କୋଳେ ମୋର ।
ଉଠିଲେ ଖାଇବୁ ପିଠା, ଖିରି ।
କେନ୍ଦ୍ରାପଡ଼ାର ରସାବଳୀ ।



ରୁନି ହୋଇଯାଅ କୁନିଲୋ ମୋର ।
ରାତି ଆସିକରି ହେଲାଣି 'ବାର' ।
ବାପା, ଭାଇ, ଅପା ଗଲେଣି ଶୋଇ ।
ତୋ କାନ୍ଦରେ ସିଏ ଉଠିବେ ଚେଇଁ ।
କହୁ ଉଠି ତତେ ଦେବେଟି ଗାଳି ।
ଶୋଇପଡ଼ ମୋର ସୁନାର ମାଳି ।
କାଲି ତ ସେମାନେ ଯାତରା ଯିବେ ।
ନକାନ୍ଦଲେ ତତେ ସାଥିରେ ନେବେ ।



ସ୍କ୍ରେଟି ଦଗର ସ୍କ୍ରେଟି ନାଆଁ ।
ପୁରୁବ ଦଗରେ ଆମର ଗାଁଆ ।

ପଶ୍ଚିମ ଦଗରେ ମାମୁଁଙ୍କ ଘର ।
ଉତ୍ତର ଦଗରେ ଗମ୍ଭୀର ବିଲ ।
ଦକ୍ଷିଣ ଦଗରେ ଜଙ୍ଗଲ ବଣ ।
ବାଘ, ଭାଲୁ, ସେଠି ପଣକୁ ପଣ ।
ଠେକୁଆ, ହରଣ, ମିରଗ, ହାତୀ ।
ବଳିଆ କୁକୁର, ବିଲୁଆ, ପାଠ ।
ସାଥି, ମେଳ ହୋଇ ରହନ୍ତି ତହିଁ ।
କଳି ଗୋଳ କେବେ କରନ୍ତି ନାହିଁ ।



ଝିଙ୍କି ଚକ ଗୁଣ୍ଡ଼ କଳରେ କୁଟା ।
ଅଳପ ବେଳରେ ଗୁହଳ ଝଟା ।
ଗୋଡ଼, ଅବା ହାତ ଲାଗଇ ନାହିଁ ।
ଅଣ୍ଟା, ପିଠି ଯୋଳି ହୁଅଇ ନାହିଁ ।
ଗୁବ ମୋଡ଼ି ଦେଲେ ଗୁଳିବ କଳ ।
କଳତ ଆମର ଅସଲ ବଳ ।



ଜାରୁ କହୁଛୁ ମୁଁ 'ପୁଲିସି'
'ପୁଷ୍ଟି' ରୁ ଗୋଟେ ଶ୍ୱେର
ଏଇ ବାଡ଼ିରେ ମଜାଟା ଆଜ
ଜଜାଲ୍ ଦେବ ତୋର ।
ମୋ ପାଇଁ ଥିଲା ସକୁର ଝୋଳ
ଲୁଚେଇ ଦେଲୁ ଖାଇ ।
ପୋଲିସି ବାବୁ ହୋଇଛ ତେଣୁ
ତୋତେ ଧରିବା ପାଇଁ ।



ସକାଳରୁ କୁନା ଦଉଡ଼ୁଛି ବୋଲି
ଦେହ ତା ରହୁଛି ଭଲ ।
ଜେଜେ କହୁଚନ୍ତି ସକାଳେ ଶୋଇବା
ହଟାଏ ଦେହର ବଳ ।

ଗାଧୋଇବା ଆଗୁ ମାଆ ଦେଉଛନ୍ତି
ଦେହ ସାରା ତେଲ ଘଷି ।
'ମୋ କୁନା ଖେଳିବ ଡାକତର ସାଙ୍ଗେ
ଗେଲ' କହୁଚନ୍ତି ହସି ।
ଜେଜେମା କହନ୍ତି 'ମଇଳା ବଢ଼ୁଚି
କୁନା ନଖ କାଟିଦିଅ ।
ନଖ ମଳି ଗୁଡ଼ା ପେଟକୁ ଗଲେଟି
ବିଗିଡ଼ି ଯିବ ତା ଦେହ ।
ଅପାର ତାଗିଦା 'ସାବୁନ ଲଗା ମା
ଦେହ ତା ରହିବ ସଫା ।
ଛାତୁ, କୁଣ୍ଡିଆରେ ନହେଲେ 'କୁନା'ର
ଦଫା ହୋଇଯିବ ରଫା ।



ହାତିଟିକୁ ମୋ'ର ସାଥିରେ ନେଇ
ଆକାଶ ବୁଲାଇ ଦେଖେଇ ଦେବି ।
ଉଡ଼ା ଜାହାଜରେ ବସି ।
ସାଥିରେ ବି ମୋର ନେଇଥିବି ପୁଣି
ନେଉଳ, କୁକୁର, ପୁଷି ।
ବାଟରେ ଭେଟିଲେ ରକେଟ୍‌ଟିଏ
ଉଡ଼ାଜାହାଜକୁ ଛାଡ଼ି ।
ବସିବୁ ତହିଁରେ ସଭିଏ ଆମେ
ଚନ୍ଦ୍ର ଦେଶେ ଯିବୁ ଉଡ଼ି ।



ଆ'ରେ ଶୁଆ ଆ
ଆମ ପୁଅକୁ ସାଥିରେ ତୋର
ଉଡ଼େଇ ନେଇ ଯା ।
ପୁଅ ମୋର ତମ ବଣ ଦେଖିବ
ପାଚିଲା ପାଚିଲା ଫଳ ଖାଇବ ।
ଝରଣା ପାଣିରୁ ପେଟେ ପିଇବ
ରାତି ହେଲେ ତୋ'ର ପାଖେ ଶୋଇବ ।
ମନେ କର ତା'କୁ ଦବୁ ଶିଖାଇ
ବାଘ, ଭାଲୁ ଦେଖି ଡରିବ ନାହିଁ ।

କହିଦେବୁ ତା'କୁ 'ସୁନାଲେ ତଳେ
କଣ୍ଟା ପଶିବ ତା କୁନି ପାଦରେ ।
ପଥର ପଡ଼ିଛ ଠାଆଁକୁ ଠାଆଁ
ଝୁଣ୍ଟି ପଡ଼ି ଗୋଡ଼ ଫୋଇବ ଯାଆଁ ।
ବଣ ବୁଲି ସାରି ଆସିଲେ ଘୁଲି
ଇସ୍କୁଲକୁ ସେ ଯିବଟି ଚାଲି ।'

□

ସାହି, ସାଇ, ସାନ୍ଧି ନସିବ ତୁ କାଉ
କୋଣାରକେ ଉଡ଼ି ଯାଆ
ଚନ୍ଦ୍ରଭାଗାରେ ବୁଡ଼ ଦେଇ ସାରି
ଭୁବନେଶ୍ୱରକୁ ଆ
ଭୁବନେଶ୍ୱରରେ ଲିଙ୍ଗରାଜ ପୂଜି
ପୁରୀ ସହରକୁ ଯିବୁ ।
ବଡ଼ ଦେଉଳରେ ବାଇଶି ପାବଚ
ଗୋଟି ଗୋଟି ଚଢ଼ୁଥିବୁ ।
ବାବା ବିଶ୍ୱନାଥ, ଗଣେଶ ଦେଖିବୁ
ଦେଖିବୁ ମାଆ 'ବିମଳା'
ରତ୍ନ ସିଂହାସନେ ବିଜେ କରିଛନ୍ତି
ପ୍ରଭୁ ଜଗନ୍ନାଥ ପରା ।
ପାଖରେ ଗେଲ୍ହେଇ ଭଉଣୀ ସୁଭଦ୍ରା
ବଳରାମ ବଡ଼ଭାଇ ।
ଆନନ୍ଦ ବଜାରେ 'ଅଭଢା' ଖାଇ ତୁ
ଆଣିବୁ ମୋ ପୁଅ ପାଇଁ ।

□

ପରବତ 'କପିଳାସ'

ସେଇ ପରବତେ ଉପର ମୁଣ୍ଡରେ
"ହର, ଗଉରୀ"ଙ୍କ ବାସ ।
ପଥର ଖୋଲରୁ ଝର ଝର ଝର
ଝରଣା ପଡ଼ୁଛ ଝରି ।
ମୋ କୁନି ପୁଅର ଗୋଡ଼ ଥକିଯିବ
ପାହାଚରେ ଚଢ଼ି ଚଢ଼ି ।

□

କଟକେ କଟକ କାଳୀ

କାଳୀ ଗଳରେ ମୋ ପୁଅ ଯାଉଅଛୁ
ହାତେ ତା'ର ସ୍ଲେଟ୍‌ଥାଳ ।
ସମ୍ବଲପୁରରେ ମାଆ ସମଲାଇ
ସିଏ ତ ସବୁରି ମାଆ ।
ବିପଦେ ଆପଦେ ସୁମରଣା କଲେ
ସବୁରି ହୁଅନ୍ତି ସାହା ।
ଗଙ୍ଗା ପାରି ହେଲେ ଦକ୍ଷିଣ କାଳୀ
'ମଶାଣି କାଳୀ' ଟି କଟକେ ।
କାଠଯୋଡ଼ି ବନ୍ଧେ ସ୍କୁଲ ଯାଉଥିଲେ
ଆଖି ତାଙ୍କ ପାଖେ ଅଟକେ ।



ମଗୁଶୀର ମାସ ଆସିଲା

ଲକ୍ଷ୍ମୀ ଠାକୁରାଣୀ ପାଦ, ପଦ୍ମ ଚିତା
ଘର, ଦ୍ୱାର ସାରା ହସିଲା ।
ଆରିସା, କାକରା, ଗଜା-ମାଲ ପୁଆ
ପୂଜା ପାଇଁ ମାଆ ଗୁଣିଲେ ।
ଚୁଲୀ ପାଖେ ବସି ବୁଢ଼ା ବୁଢ଼ୀମାନେ
ଶୀତରେ ଉଷୁମ ଟାଣିଲେ ।
ଧାନକଟା ଗୀତ କ୍ଷେତରେ ଶୁଭିଲା
ହଳା ଜମା ହେଲା ଖଳାରେ ।
ଶୀତ କାକରକୁ ପିଠିରେ ବସାଇ
ମଗୁଶୀର ଆସି ଗଲାରେ ।



ଭାଦ୍ରବ ମାସର ରବିବାର ।
ଫୁଲ ତୋଳା ହବ ହେଲେ ଭୋର୍ ।
ଖୁଦୁରୁକୁଣୀ କୁଆଁରୀ କରିବ ପୂଜା ।
ଭୋଗ ଦବ ଚୁଡ଼ା, ଉଖୁଡ଼ା ଗଜା ।
କଦଳୀ, କାକୁଡ଼ି, ଲଡ଼ୁ, ନଡ଼ିଆ ।
କୁନା କୁନି ଖାଇ ମାରିବେ ଡିଆଁ ।



ଝୁପୁ-ଝୁପୁ ଝୁପୁ ମେଘ ଝୋପାଆଣି
ଆସିଛୁ ଆଶାଢ଼ ମାସ ।
ଫୁଟିଲାଣି-ଜୁଇ, ଟଗର, ମାଲତୀ
କଅଁଳ ଗଜାଣି ଘାସ ।
ମାରିଲାଣି ଘଡ଼ଘଡ଼ ବିଜୁଳି
ପାଚ ଝୁଲିଲାଣି ଜାମୁ, ପିଜୁଳି ।
ପାଖ ହୋଇଲାଣି ରଜ ।
କୁନା କୁନି ମୋର ଦୋଳରେ ଝୁଲିବେ
ହୋଇ ନୂଆ ନୂଆ ସଜ ।



କାର୍ତ୍ତିକ ମାସେ "ଦୀପାବଳୀ"
ପୂଜା ପାଇବେଟି "ମାଆ କାଳୀ ।
କୁନା କୁନି ଦେବେ ଦୀପ ଜାଳି
ମାରିବେ ସେ ବାଣ, ଫୁଲ ଝରି ।
ଛାଡ଼ି ବାଣ ଆଉ ତୁଆସିଲି ।
ହସି ଦେଉଥିବେ ଖିଲି ଖିଲି ।
ଫଟକା ମାରିବେ ଠୋ, ଠା
ବମ୍ ଫୁଟେଇବେ ଢୋ, ଢା ।
ହାବେଲି, ରକେଟ୍ ଦେବେ ଗୁଡ଼ି
ଉପରକୁ ଯିଏ ଯିବ ଗୁଲି ।
ଆମ କୁନାକୁନି ଦୀପ ଜାଳି
ଉଆଁସ ଅନ୍ଧାର ଦେବେ ତଡ଼ି ।



ଆସିଗଲା ଦଶରା,
ଚାରିଆଡ଼େ ମେଲାଇଲା
ହସ ଖୁସି ପସରା,
ନାହିଁ ଆଉ ବରଷା
ଚାରିଆଡ଼ ସରସା,
ଦେବୀ ପୂଜା ହେବଟି
ପିଠା, ମିଠା, ଫଳ ଫୁଲ
ଲୋକ ଦୁଃଖ ନେବଟି ।



'ମାଘ ମାସ' ଆସିଗଲାରେ ।
ହାଡ଼ଭଙ୍ଗା ଜାଡ଼ ବାଘପରି ଆସି
କଲିଜା ଥରେଇ ଦେଲାରେ ।
ସୂର୍ଯ୍ୟ ବୁଡ଼ିଲା, ସନ୍ଧ୍ୟା ଆସିଗଲା,
ଅଜା ଡାକ ଦେଲେ ଆଇଙ୍କି ।
ନିଆଁ ଜଳେଇଟା,
ବେଗେ ନେଇ ଆସ,
ଡେରି କର ଆଉ କାହିଁକି ? ।



'ଚଇତି ପୁନେଇ' ଚଇତି ଘୋଡ଼ା ଲୋ
ନାଚ ବୁଲେ ଗାଆଁ ଗାଆଁ ।
ଘୋଡ଼ା ମୁଣ୍ଡେ ବୋଳା ଗୋଳା ସିନ୍ଦୂରଟି
ଦେଖିବ ସଭିଏ ଯାଆ ।
ଝୁଲି ଝୁଲି ଯେବେ ନାଚୁଥାଇ ଘୋଡା
ନାଚେ ତା ମନ୍ଦାର ମାଳ
ନାଚଇ ରାଉତ, ନାଚେ ରାଉତାଣୀ
ବହୁ ପଡ଼େ ଦେହୁ ଝାଳ ।
ଗାଆଁରୁ ଗାଆଁକୁ ଘୋଡ଼ା ନାଚ ବାଜା
ପବନେ ପହଁଚ ଯାଏ ।
ଚଢ଼େଇସୁଆ ଗୀତକୁ ଆମ ଦୂଅ ବସି
ରାତି ସାରା ଶୁଣୁ ଥାଏ ।



ମାଘ ପୁନେଇଁରେ ଅଗ୍ନି ଜଳିବ ।
ଅଗ୍ନିଜଳା ଦେଖି ଶୀତ ଟଳିବ ।
ଆସିବ ଫଗୁଣ ମାସ
ତୋଟା ପାଖବାଟ ମହକେଇ ଦେବ
ଆମ୍ବ ବଉଳର ବାସ ।
ଫୁଟିବ ଚଣା, ଧରିବ କସି
ପଖାଳ ଭାତରେ ଖାଇବା ବସି ।



କୁଆଁର ପୁନେଇ ଜହ୍ନ
ନାଉଫୁଲ ପରି ଦାନ୍ତ ଦାନ୍ତ ଦିଶେ
ସେଇ ଜହ୍ନଠାରେ ମନ ।
ମୋ କୁନି ଖେଳିବ ପୁଷ୍ପ ।
ଆଉ ଯେତେ ଝିଅ ଅଛି ଘ'ର ସବୁ
ଘରକୁ ଆସିବେ ପୁଷ୍ପ ।

□

ପୁଷ୍ପ ପୁଷ୍ପ ଯାଏ ଗୁଚ୍ଛ
ଆମ ଝିଅ ଯେବେ ଅଣ୍ଟ ହୋଇବ
କାଖ କରି ନେବେ ଭାଇ ।
ଭାଇଙ୍କ ହାତରେ ବନ୍ଧ ।
କୁନି ଯାଇଥିଲା ମାମୁଁଙ୍କ ଘରକୁ
ପାରି ହୋଇ ଥିଲା ନଈ ।

□

ମାର୍ଗଶୀର ମାସ ଶେଷ ହୋଇଗଲା
କ୍ଷେତେ ଧାନ ଗଲା ପାଚି ।
ଦାଆ ହାତେ ଧରି ଚାଷି ଭାଇ ମନ
ଖୁସିରେ ଉଠିଲା ନାଚି ।
ଭୁଲିଲା ଶୀତ, ଗାଇଲା ଗୀତ
ଚାଲିଛି ଯେମିତି ପାଗଳ
ଦାଆ ଧରି ହାତେ, ସାଙ୍ଗଭାଇ ସାଥେ
ଧାନ କାଟିବାକୁ ଧାଇଁଲା ।

□

ମଗୁଶୀର ମାସ ଦୂବଦାସ ଶେଷେ
ଦାନର ପଡ଼ିଛି ଶୋଇ
କୁନମୁନ୍ ମୋର, ଶୀତେ ଥର ଥର ।
ଜେଜେମା କୋଳରେ ଥାଇ ।
ଶୀତରେ ଶୀତ ! ଗାଇଲେ ଗୀତ,
ପଳେଇବ ଗୁଡ଼ ସଇନ ।
କୁନିର ପାଦରେ ଅଳତା ପଟି
ମୀନା କାମ କରା ପାଉଁଜ ।

□

ଆ'ରେ ମେଘ ଆ,
ବରଷି ଦେଇ ଯାଆ ।
ଦାଣ୍ଡରେ ଗୁଲୁ ପୁଅ
କୁନା ମୋ ସୁନା ପୁଅ
କାଗଜ ଡଙ୍ଗା କରି
ଭସାଇ ଦେଉ ଧରି ।
ଯାଆରେ ଡଙ୍ଗା ଯାଆ,
ସମ୍ବଲ ଫେରି ଆ,
ସେ ଗାଆଁ କଥା କହୁ ।
କୁନା ପାଖରେ ରହୁ ।
ଆମ କୁନାଟି ସୁନା,
ତାହାର ସାଥି ମୁନ୍ନା
ଦୁ'ଜଣ ଭଲ ଗୁଟେ—
ପଢ଼ନ୍ତି ଭଲ ପାଠ ।



ଆକାଶ ରାଇଜ ରାଜା ରେ
ଆସୁଛ ବଜାଇ ବାଜା ରେ ।
ବଉଦ ଘୋଡ଼ାରେ ଚଢ଼ିଛ
ଚଡ଼ଚଡ଼ି ବାଣ ମାରୁଛ ।
ବରଷା ଦେଉଛ ଝରେଇ ।
ଦହକୁ ଦଉଛ ଥରାଇ ।
ବିଜୁଳି ଦୀପାଳି ଜାଳୁଛ ।
ବନ-ରାଇ ପାଣି ଢାଳୁଛ ।



ବରଷା ତୁ ଆ ଆ ରେ
ଗୀତଟିଏ ଗାଆ ରେ ।
ଝୁପୁ ଝୁପୁ ଟୁପୁ ଟୁପୁ ବରଷି ଯା ପାଣି
ବରବେଶେ ବେଙ୍ଗ ଯାଉଁ ବେଙ୍ଗୁଳିକୁ ଆଣି ।
ଘଡ଼୍, ଘଡ଼୍, ଘଡ଼୍, ଘଡ଼୍ ଘଡ଼ଘଡ଼ି ବଜାରେ ।

ବଜା, ବଜା, ବଜା ରେ ।
ବଜା, ବଜା, ବଜା ରେ ।
ଚକ୍ ଚକ୍ ଚକ୍ ଚକ୍
ମାର ଦେଏ ବିଜୁଳି ।
ଘଡେଇଦେ, ଘଡେଇଦେ
ଜାମୁକୋଳି, ପିଜୁଳି ।



ମେଘ ବରଷଇ ଟୁପୁରୁ ଟୁପୁରୁ
ବେଙ୍ଗ ଡ଼ିଏଁ ଫକ ଫକ ।
ଆମ ପୁଅ ମୁଣ୍ଡେ ଜଳ ଛୋପିଟିଏ
ଦିଶୁଥାଏ ଜକ ଜକ ।
ମେଘ ବରଷଇ-ଝିଡ଼ିଆ ପାଖରେ
ଝିଡ଼ି ପୋକ ଉଡ଼ି ବୁଲେ ।
ଆମର ଝିଅଟି ସୁନା ଫୁଲ ଟିଏ
ଦୋଳି ଗୀତ ଗାଇ ଝୁଲେ ।



ବଇଶାଖ ମାସ ଖର ଟାଣ ଖରା
ଝାଳ ବହେ ଗମ ଗମ ।
କୁନି ହସି ଦେଲେ ଗୁନ୍ଦ ମୁହଁ ତା'ର
ଦିଶେ ନାଲି ଥମ ଥମ ।
ନାଲି ପଥର ମୁଢ଼ ।
କୁନି ପିନ୍ଧିଥିଲା ବାଜେଣୀ ପାଉଁଜି
ଘୁଲୁଥିଲା କୁଦ କୁଦ ।



ଝର ଝର ଝର ଝରେ ବରଷା
ଆମ ବଗିଚାଟି ଦିଶେ ସରସା ।
ଫୁଟି ମହକୁଛି ହେନା ଟଗର
ଗୋଲାପ, ମାଲତୀ-ଯୁଇ, ମନ୍ଦାର ।
ଆଖି ଝଲସାଇ ମାରେ ବିଜୁଳି ।
ପାଚି ଝଡ଼ୁଅଛି ଡାଳ, ପିଜୁଳି ।

ଭୂଇଁ ଦୁଲୁକୁଚି ଘଡ଼ ଘଡ଼ିରେ ।
ଶୁଣି କୁନା କୁନି ଉଠି ପଡ଼ିଲେ ।



ଶୀତ ଅଇଲା ଶୀତ ଅଇଲା
ବହେ ହେମାଳ ବାଆ ।
ବଳେଇ ନାଗ-ବଲୁଆ ନନା
ପିଅନ୍ତି ବସି ଗୁହ୍ଲା ।
କଲ ଝୁଲଣାରେ ଭାଲୁଆ ବସି ।
ଘିରି ଘିରି ବୁଲେ-ମୁରୁକ ହସି ।



‘ଫଗୁଣ’ ମାସରେ ଦୋଳ,
ଗାଆଁ ଭୋଗ ଖାଇ ଦିଅଁ ବାହାରିଲେ
ମୁନ୍ନା ବଜେଇବ ‘ଖୋଳ’ ।
କୁନାର ହାତରେ ଝାନ୍‌ଜ ବାଜୁଥିବ
ଝାଇଁ ଜାଇଁ-ଗଇଁ ଝାଇଁ ।
ଜାଠ ଜାଠ ରଙ୍ଗ ଅବିର ଖେଳରେ
ଘାଠ ସିନା ଜିବ ପାନ୍ଥ ।



ଶୀତ ମାଉସୀ ଲୋ ଶୀତ ମାଉସୀ ।
ମୋ କୁନି ପିଠିକୁ ଦେଏ ଆଉଁସି ।
ତୋ ହେମାଳ ହାତ ବାଜିବ ଯେବେ ।
ସୁନା ଝିଅ ମୋର ଶୋଇବ ତେବେ ।
ଘାଠ ଆସିକର ହେଲଣି ବା’ର ।
ନିଦ ଆସୁ ନାହିଁ ଆଖିକୁ ତା’ର ।
ଅଝଟ ହୋଇ ସେ କାନ୍ଦୁଚି ଖାଲି ।
ମୁହଁ, ଆଖି ପଡ଼ିଗଲଣି ନାଲି ।
ବେଗେ ତୁ ଆ ଆ ଲୋ ଶୀତ ମାଉସୀ ।
ଝିଅର ପିଠିକୁ ଦେଏ ଆଉଁସି ।



ଶୀତ ଅଇଲାରେ ଅଇଲା
ନିର୍ମାଳ ପବନ ବହିଲା ।
କାକର ସାଥିରେ ଆସିଲା ଶୀତ
ଧାନ ବିଲେ ବସି ଗାଇଲା ଗୀତ ।
ସୋରିଷ ଫୁଲର ହଳଦୀ ପାଟ
ତାକୁ ପିନ୍ଧି ଶୀତ କଲା ନାଟ ।
ଲୁନା ଜାଣେ ଲୁନ କହିଲା ।
ଆମର ସାଥିରେ ସାକଯୁକ ହୋଇ
ଶେଯ ତଳେ ଶୀତ ଶୋଇଲା ।

□

ମଗୁଶୀର ମାସେ ଦନ୍ତ ଫୁଟା ଶୀତ
ପୁଷ, ମାଘ ଶୀତ ଘର ।
ପୁଅ ମୋର ଯେବେ କୋଳରୁ ଓହ୍ଲାଏ
ଦିହ ତା'ର ଉଠେ ଥର ।
ଓଠେ ଓଠ ଯାଏ ବାଜି ।
ଗେଲେଇ କହେ ସେ ବୋଉ ଲୋ
ତୋ କୋଳ ଛାଡ଼ି ପାରିବିନି ଆଜି ।

□

ଶ୍ରାବଣ ମାସ ଅଇଲା
"ଝର ଝର ହୋଇ ମେଘ ବରଷିବ"
'ଲୁନା'ଟି ଲୁନକ କହିଲା ।
"ପାଚ ମହୁକବ ପିଜୁଳି ।
ଆଖି ଝଲସାଇ ଚକ୍ ଚକ୍ ହୋଇ
ମାରିବ ଲୁନଙ୍କେ ବିଜୁଳି ।
ଘଡ଼ ଘଡ଼ି ମାରି ଚମକାଇ ଦେବ
ଖେଳିବେ ମାଛର ଜାଆଁଳ ।
କେ କେ ମା କହିବେ "ଶୋଇପଡ଼ ଧନ
ହୋଇଲାଣି ପାଣି ଜାହାଳ" ।

□

ମଗୁଶୀର ମାସ ଅଇଲା
ପାଚିଲା ଧାନର କେଣ୍ଡାମାନ ଧରି
ଧାନଗଛ ସବୁ ନଇଁଲା ।

ଆ' ସୁଖୀ ହଇ ଦାଆକୁ ଧର
ଧାନ କାଟି ଦେଏ ତେର ନକର ।
ହଳା ଜମା କର ଖଳାରେ ।
ନୂଆ ସୁଆଳର ଝିସ୍ ସିଝା କର
ପାଟି ଆଡ଼େ ହାତ ଚଳାରେ ।

□

ମେଘ ଘୋଟିଲଣି କଳା ଧୂମର ।
ବଣ ଜଙ୍ଗଲରେ ନାଚେ ମୟୂର ।
ବେଙ୍ଗ ଲୁଣ୍ଡ ଡେଉଁଚ ଫକର ଫକ
ଉଡ଼ି ବୁଲିଲେଣି ଝଡ଼ିଆ ପୋକ ।
ଦନ ରାତ ବାଣ ହୁଅଇ ନାହିଁ
ଦେଏଖେରେ କୁନା ଆକାଶେ ସୁହିଁ ।
ମେଘ ପାଣି ଯେବେ ପଡ଼ିବ ତଳେ
ବାହାକୁ ଅସି ତୁ ରହିବୁ ଘରେ ।

□

ପୁଷ ମାସ ଶୀତ—କ ଗୀତ ଗାଇଲଁ
ଛେତରେ ଫଲନ୍ତ କୋବି ।
ରଙ୍ଗ ଆଉ ତୁଳି ସଜାଡ଼ି ରଖିଥା
ମୋ ପୁଅ ଆଙ୍କିବ ଛବି ।

□

'ଚଇତ' ମାସରେ ଝାମ୍ପୁ ଯାତସ୍ରି ଟି
ଗୁଇଁ ଗୁଇଁ ମାରେ ଖସ୍ ।
ଧୀର ପବନରେ ଅମ୍ବ ପାଚ ଝଡ଼େ,
ଆଣିବାକୁ ଧସ୍ତ ଦସ୍ ।
ପାଚଲ ପଣ କୁହାଟ ଗୁଡ଼ହ
"ଦେ ଦେ ବେଗେ ତୋଳି ନଅ ।
ସପୁରି କହୁଚ ମୁଁ ଭାର ମିଠା
ମୋତେ କାଟି ଖାଇଦଅ ।
ଖଜୁରି-ଭଉଁଚ-ବେତକୋଳି ସବୁ
ମୁହଁକୁ ଶୁଖେଇ ଦେଇ ।
କଥା ହେଉଚନ୍ତି "ଅମକୁ ତ ଅଉ
କେହି ପଗ୍ଭରଲେ ନାହିଁ" ।

"ଜ୍ୟେଷ୍ଠ ମାସେ ଟାଣ ଖରା ।
ପଣା, ପାଣି ପିଇ ଘରଭିତରେ ରହ
ମୋ ସୁନା ପୁଅଟି ପରା ।
ଘଣ୍ଟା ବାଜିଲେ ଯାଇ ଖରା ନଇଁଯିବ
ଖେଳିବୁ ବୁଲିବୁ ମନା ମୁଁ କରିବ ନାହିଁ ।



ଆସିଛି ଆସିଛି ବରଷା ମାସ
ବଉଳ ଫୁଲରେ ବୋଳିଛି ବାସ ।
ଝର ଝର ଝରୁଅଛି ବରଷା
ବଗିଚ୍ଚ ଦିଶୁଛି ବଡ଼ ସରସା ।
ପାଚୁଛି ପିଜୁଳି, ନାଚୁଛି ବେଙ୍ଗ
ପୋଖରୀ ପାଣିରେ ଖେଳୁଛି ଚେଙ୍ଗ ।
ବଢ଼ିଆ ଦିଶୁଛି ଘାସ ପଡ଼ିଆ
ମୋ ଜୁନା ଖାଇବ ମୁଢ଼ି, ନଡ଼ିଆ ।



ଶ୍ରାବଣ ମାସ ଆସିଲା
ଘରେ ଘରେ ହେଲା ଚିତାଉ, ଚକୁଳି
ମନ୍ଦ ମନ୍ଦ ହୋଇ ବାସିଲା ।
ମାସ ଶେଷେ ଗହ୍ମା ପୂନେଇ ।
ଝୁଲଣ ବେଦୀରେ ଦିଅଁ ଝୁଲୁଥିଲେ,
'ଝୁଟୁ' ରହୁଥିଲେ ଅନେକେ ।



ଏଇ ମାସ ଗୋଟି 'ଭାଦ୍ରବ'
ନାହିଁ ପଚ ପଚ କାଦୁଅ ।
ବରଷା, ବତାସ, ପବନ
ସତେ ଅବା ଏବେ ସପନ ।
ଖୁଦୁରୁକୁଣୀ ପୂଜା ପାଇଁ
ରାତି ପାହୁ ପାହୁ କୁନି ଝିଅ ମୋର
ଫୁଲ ପାଇଁ ଯିବ ଧାଇଁ ।

‘‘ଟେଣେ ପୂଜା’’ର ଦିନଟି ।
ଗଣେଶ ପୂଜିବ ଅମ କୁନା ବାବୁ
ପାଟରେ ଲଗାଇ ମନଟି ।



କାର୍ତ୍ତିକ ଧର୍ମ ମାସ ।
ବଡ଼, ବଗୁଲି ଏ ଆଈଷ ଗୁଡ଼ିବେ
କରିବେ ସେ ଉପବାସ ।
ଅଜା ଆଉ ଦୁଇଜଣ ।
ପୁଣି ‘ଦେଉଳ’ରେ ହବିଷ କରି ସେ
ଖାଇବେ ଅବଢ଼ା ଅନ୍ନ ।
କାର୍ତ୍ତିକ ପୂନେଇଁ ଦିନ
ଗଡ଼ ଗଡ଼ିଆରେ ବାଲିଯାତ୍ରା ଦେଖି
ଖୁସି ହେବ କୁନା ମନ ।



ପୁଷରେ କାହ୍ନାଳ ହୋଇଲା ।
ନୂଆ ଧାନ ଭାଜି ଧନୁ ମୁଆଁ କରି
ଆମ ଜେଜେ ମାଆ ଖୋଇଲା ।
ରାତି ପାହି ହେଲେ ସକାଳ
‘ବାବୁନି’ କହିଲା ମୁଆଁ ମୋତେ ଦିଅ
ଖାଇବି ନାହିଁ ମୁଁ ପଖାଳ ।



‘ମାଘ ମାସଟିରେ ‘ମକର’ ମେଳା
ବାଘ ପରି ଶୀତ ଡରେଇ ଦେଲା ।
ବେଙ୍ଗଲା ପଶିଲା ଖଲାରେ ।
ବରଷ ଗୋଟାକ ଚଳିବା ପାଇଁକି
ଅମାରକୁ ଧାନ ଗଲାରେ ।
ଗରମ ପୋଷାକ ମଢେଇ
ଆମ କୁନା, କୁନି ସଜବାଜ ହେଲେ
ଶୀତକୁ ଦବାକୁ ଡରେଇ ।



ଫଗୁଣ ମାସରେ ଦୋଳ ଦଶମୀରେ
ଦାଣ୍ଡେ ବାହାରିଲେ ବୁଲି ।
ଦେଖରେ ଦେଖରେ ବିମାନରେ ବସି
ଯାଉଛନ୍ତି ଝୁଲି ଝୁଲି ।
ହୋଇଲେ ପୂଜେଇ ବାସି ।
ରଙ୍ଗ, ଅବିରରେ ହୋଲି ଖେଳି ଖେଳି
ସଭିଏ ହୋଇବେ ଖୁସି ।



ଶୀତ ଟାଣ ହେଲା ଖରା ।
"କୁଲି କୁଲି" ପାଇଁ ସୁଏଟର୍ ଟିଏ
ମାଆ ତା'ର ଦେଲେ କରା ।
ଟୋପିଟିଏ ପୁଣି କଲେ ।
ଗରମ କନାରେ ଜାମା କଲେ ଅପା
ଆଉ ମୋଜା ବୁଣି ଦେଲେ ।
"କୁଲୁ" ସବୁ ପିନ୍ଧିଦେଲା ।
ବଡ଼ ସକାଳରୁ ଦେଖୁ ଦେଖୁ ତାକୁ
ଶୀତ ଡର ଡର ପଳେଇଲା ।



କଟା ବଟି ବେଳ ଅଇଲା
ବଳଦକୁ ଛଡ଼ାଇଲା ଧାନ ମନ ଦୁଃଖେ
"ତୋ' ମୋ' ସାଙ୍ଗ ସଇଲା
ମୁଁ କଟା ହୋଇ ଏବେ ଯିବି ।
ଖଣିରେ କ ଘରେ ଯେଉଁଠାରେ ଥାଏ
ମାଆଲୋ ମୋର ।
ତୋତେ ମନେ କରୁଥିବି ।



ଦଣ୍ଡ ସରବତ୍ତ ପଇଡ଼ ପାଣି
ମୋ 'କୁଲୁ କୁଲି''କୁ ଖରା ଶୋଷ ଏବେ ।
ଖସ୍ବଦନେ ତା'କୁ ଦଅରେ ଆଣି ।

ପଖାଳରେ ଆମ୍ବ କଷି ।
ମନ୍ଦ ମନ୍ଦ ହୋଇ ବାସି ଉଠୁଥିବ
ମୋ ଧନ ଖାଇବ ବସି ।
ଖରାଦିନେ ଟାଣ ଝରା ।
ଖରା ଧାସ ବାଜି ମୋ ପୁଅ ଦେହରୁ ।
ଫିଟିପଡେ ଝାଳ ଝରା ।
ମହକଲା ଆମ୍ବ ପାଚ ।
ଦୁଇଟା ବେଳକୁ ଲସି ପିଇ ପୁଅ
ଖୁସିରେ ଉଠିବ ନାଚ ।
ପଣସ ପାଚିଲା ଗଛେ ।
ମୋ ପୁଅ, ଝିଅଙ୍କ କଥା ଆଗେ ବୁଝି
ଆଉ କାମ ଥାଉ ପଛେ ।



ପୂଜା ପାଇଲେଣି ଦେବୀ ।
ଆସ କୁନା କୁନି ସଜ ବାଜ ହୋଇ
ଦେବୀଙ୍କି ଦେଖେଇ ନେବ ।
ଜଳୁଚି ଦୀପ ଲାଗିଛି ଧୂପ,
ଫୁଲ ହୋଇଚି ସଜା ।
ଜାତିକ ଜାତି କେତେ ଯେ ଭୋଗ
ଖାଇବା ପାଇଁ ମଜା ।
ଲୋକ ଗହଳି ବାହାରେ କଣ
ବାଜୁଛି ବାଜା ଢଣ ଢଣ ।
ଆସରେ ସଜ ହୋଇ
ଦେବୀ ପୂଜାର ପରବ ଉତ୍ସବେ
ରହିବା ଜମା ଶୋଇ ।



ବୁଢ଼ୀଗଲା କୁଆଁ ତାରା ଫୁଲ ସବୁ ଫୁଟିଲା ।
ଆମ କୁଲୁ ଆଖି ମଳି ବିଛଣାରୁ ଉଠିଲା
ମାଆଙ୍କର କାଖରେ ।
ବସି ସେ ଅନେଇ ଦେଲା କବାଟର ଫାଙ୍କରେ ।

ଖରା ପଡ଼ି ଗଲଣି ।
ସାଙ୍ଗମାନେ ଆସିଯିବେ ସ୍କୁଲ ବେଳ ହେଲଣି ।



'ଯିଲୁ' ଯାଇଥିଲା ଯାତରା ଦେଖି କେ
ମୁଁ ଡେରିଥିଲି କାନ ।
'ଯିଲୁ'ର ଆସିବା ଉଛୁର ହୋଇଲା
ଘରେ ଲାଗୁନାହିଁ ମନ ।
ଯାଅ ଆରେ ବାବା ଯାଅ ।
ପୁଅ ମୋ'ର ଯେବେ ବାଟ ଭୁଲିଥିବ,
କାନ୍ଦୁଥିବ ଧରି ରାସ୍ତା ।
ଆଣ ତା'କୁ ଡାକ ଧରି ।
କିଣି ଦେବି ତାକୁ ବେଲୁନ୍-ଭଣ୍ଡେଇ
ଖେଳିବ ସେ ଘରେ ଧରି ।



ଝଡ଼ିଗଲା ଫୁଲଟିଏ ଉଡ଼ିଗଲା ଭଅଁର ।
ଆମ ପୁଅ ବୁଲିଯିବ କଲିକତା ସହର
କଲିକତା ସହରରେ ଖୁବ ଲୋକ ଗହଳି ।
ଆମ ପୁଅ ପାରିହେବ ଗଙ୍ଗାନଦୀ ପହଁରି ।
ସହରଟା ବୁଲି ସାରି ମାମୁଁ ଘରେ ରହିବ ।
ଯାହା ଦେଖିଥିବ ଆସି ଆମ ଆଗେ କହିବ ।



ଦାଦା ଆଣିଥିଲେ ଖେଳନା ବନ୍ଧୁକ,
ଜିରୁ ଖେଳୁଥିଲା ଧରି ।
ଓଲେଇ ବଲେଇ ଆସୁଛି ଦେଖିଲା
ମାରି ଦେଲା ଢୋ କରି ।
ବଲେଇ କରିଲା ଛୁ ।
ଜେଜେ ଦେଖୁ ଥିଲେ,
କହିଲେ 'ଜିରୁ ରେ' ବଡ ବୀରଟିଏ ତୁ"



ବାପା, ଦାଦା ଭାଇ ଡ଼ାକିବା ପାଇଁକି
ମାଆ ଅଗେ ଦେଲେ ଶିଖେଇ
ପାଠ ପଢ଼ିବାକୁ ହାତ ଧରି ପୁଣି
ଅକ୍ଷରକୁ ଦେଲେ ଲେଖେଇ ।
ଉଡ଼ାଜାହାଜଟି ଉଡ଼ି ଯାଉଥିଲା
ବାପା ତା'କୁ ଦେଲେ ଦେଖେଇ ।
ବୋଲେ ଭାଙ୍ଗିଲୁ, ଭଙ୍ଗା କାଚ ସବୁ
ଝୁଡ଼ୀ ନେଇ ଦେଲେ ପକେଇ ।
ପାଣି ଛାଲି ଶେଯ ଓଦା କଲୁ ବୋଲି
'ଅପା' ତା'କୁ ଦେଲେ ଶୁଖେଇ ।
ଚଟକଣାଟିଏ ଥୋଇ ଦେଲେ ବୋଲି
କାନ୍ଦିଲୁ ତୁ ଖାଲି ସକେଇ ।
ଜେଜେ ମାଆଙ୍କର ଦନ୍ତସନ୍ଦନ
ଆଉ ପିଲେ ପିଏ କାଖେଇ ।
ଜେଜେ କହିଲେ : ରେ ପିଲାଟାକୁ
କଣ ଦବ ନାହିଁ ଆଉ ରଖେଇ !
ସୁନା ପୁଅଟାକୁ ଟିକିଏ କଥାରେ ମାଡ଼
ଦେଉଅଛ ଚଖେଇ
କାନ୍ଦ୍ନାରେ ପୁଅ ବଳ ହଟିଯିବ
ଏମିତ ହେଇଲେ ଧକେଇ ।
ଲୁହ ପୋଛି ହସ-ଦାଦା ବୁଲେଇବେ
ସ୍କୁଟରରେ ତୋତେ ବସେଇବେ ।



କେହି ମୋ ପୁଅକୁ ମାରିବ ନାହିଁଟି
ପୁଅ ସୁନା ପିଲାଟିଏ !
କ୍ଷୀର, ସର, ଭଲ ଗିଲାସେ ଆଣିତ
'ଢ଼ୁକୁ ଢ଼ୁକୁ' ପିଇ ଦିଏ !
ମୋ ପୁଅପରି କିଏ ହେବ ? ।
ଉଡ଼ ଯାଉଥିଲେ ଲେଟଣୀ ପାଗଟି
ଧରି ଆଣି ପିଏ ଦିବ ।



ଝର ଝର ମେଘ ବରଷି ଯାଉଛି
ଚାଳରୁ ଗଡ଼ୁଛି ପାଣି ।
ବରବେଶ ହୋଇ ବେଙ୍ଗରଜା ଆସେ
ବେଙ୍ଗୁଲି ସାଜିଛି ରାଣୀ ।
ଶୂନ୍ୟ ଘଡ଼ ଘଡ଼ ବାଜା ବଜାଉଛି
ବିଜୁଳି ରୋଷଣୀ ଜଳେ ।
"ଝିଙ୍କି ପୋକ" ଖଞ୍ଜ ନେଉଛି ଭାଇଟି
କୁଣିଆ ଚରଚା କରେ ।



ହଳଦୀ ବସନ୍ତ, କଜଳ ପାତି,
ଭଦ ଭଦଲିଆ, ପରଜା ପତି ।
ଶୁଆ, ସାରି, କାଉ, ବଣି ଚଢ଼େଇ ।
ଘରଚଟିଆଙ୍କୁ ସାଥିରେ ନେଇ ।
ଆସ ପୁଅ ସାଙ୍ଗେ ଖେଳିବ ଖେଳ,
ଏଇତ ପୁଅର ଖେଳିବା ବେଳ ।
ଢେର କଣଚ ପିଠା ମିଠେଇ ।
ତୁମ ସବୁଙ୍କୁ ମୁଁ ବାଣ୍ଟିବି ନେଇ ।
ଆମ ଘରେ ଅଛି କାକର ପାଣି,
କ୍ଷୀର, ଦହି, ଛେନା ସର ଲହୁଣୀ ।
ଖାଇବ, ପିଇବ-ଗୀତ ଗାଇବ,
ନାଚ, କୁଦ ସାରି ଘରକୁ ଯିବ ।
ନଈରେ ନଈ ! ଯାଉଛୁ ବହି
ଦେଖେଇ କେତେ ଛଟକ, ଛଇ ।
ଆମ ପୁଅ ତତେ ଦବ ବନ୍ଧେଇ ।
ବନ୍ଧେଇ ଦେଲେ ବିଜୁଳି ଜଳ ।
ଦବରେ ବଲ୍ବ
ଚାଲିବ ପଙ୍ଖା ମାଲକୁ ମାଲ ।
ଭିତରେ ତା'ର ଡେଇଁବେ ମାଛ
ଚାରି ପାଖରେ ବହୁତ ଗଛ
ପାଣି ମାଡ଼ିବ-ଫସଲ ହେବ
ସବୁର ମୁହେଁ ଆହାର ଦବ ।



ଝିଙ୍କନା କହୁଲା 'ସ୍ୱଗମନ ମୋର
ଶୂଆଟିଏ ହେବା ପାଇଁ ।
ଏଗଛ ସେଗଛ ଉଡ଼ି ବୁଲବ ମୁଁ
ଫଳ ସବୁ ଖାଇ ଖାଇ' ।
'ବାବୁନା' ହସିଲା, କହୁଲା "ପଞ୍ଜୁରୀ
ମଜା ତୁ ଜାଣିନୁ ସତେ ।
ଧରନେଇ ଲୋକେ ତାହାର ଭିତରେ
ବନ୍ଦ କରି ଦେବେ ତୋତେ" ।



ମାମୁଁଙ୍କର ଝିଅ ଗହଣୀ
କଥା କହୁ କହୁ ହସି ଗଡ଼ିଯାଏ
ଖେଳୁଥାଏ ଚକା ଭଉଣୀ
ମାମୁଁ ଘର ଆଈ, ଅଜାଟି
ତାଙ୍କ ପିଲାକାଳ କଥା ଚପି ଗପ
କରନ୍ତି ସେ ଭାରି ମଜାଟି ।
ମାମୁଁ ଘର ଗାଆଁ ଗଡ଼ିଆ-
ଭିତରଟା ଯାକ କଇଁ ଫୁଲ ତା'ର
ଘରପାଖେ ଗଛ ନଡ଼ିଆ ।
ଆମ ମାମୁଁଘର ମାଇଁଟି
କୋଳରେ ବସେଇ ଗୀତ ଗାଇଦେଲେ
ସହଳ ହଏ ମୁଁ ଖାଇଟି ।
ଆମ ମାମୁଁ ପରବାଣରେ ।
ମୋ ପାଇଁ ଆଣିବେ କେତେ ଭଲ ଚିଜ
ଆସିଲେ ଅଶିଣ ମାସରେ ।
ଅଶିଣ ମାସରେ ଦଶରା ।
ବାଇଦ ବାଜବ-ଦେବୀ ପୂଜା ହେବ
ଖୋଲା ହେବ ହସ-ପସରା ।
ନଦ ମାଉସୀ ତୁ ଯାଆ ଲୋ ସ୍କୁଲ
'ତୁତୁ' ଖାଇସାରୁ ଭାତ, ଡ଼ାଲି ।

ମୁହଁ ହାତ ସାବୁ ଧୋଇ ।
ତା' ପରେ ଯାଇ ଆସିବୁ ଉଡ଼ି
ତୋତେ ଦେଖି ସିଏ ପଡ଼ିବ ଶୋଇ ।



ଝିପିରେ ଝିପି ଟାଣୁଆ ଝିପି
ଚାନ୍ଦ ପାଇଁ ଆସି ଝାଳ ଗମ ଗମ ବୁହାଇ
ଆମର ମୁନାକୁ ଛଟ ପଟ କଲୁ,
ଦେଲୁ ନାହିଁ ଟିକେ ଶୁଆଇ ।



ଆସ ଗୋ ସଙ୍ଗାତ ଗାଧୋଇ ଯିବା
କଇଁଚ ନାକୁଡ଼ ତୋଳି ଆଣିବା ।
କଇଁଚ ନାକୁଡ଼ ମୁଣ୍ଡିରେ ପିନ୍ଧା
ସାଧବ ବୋହୂର ଝିଅ ବୁନ୍ଦା ।
ସବୁଠୁ ବଡ଼ଟି ସୁନ୍ଦର ଢଗ
ତାଆଠାରୁ ସାନ ଅସଲ ଫଗ ।
ତାଆ ତଳ ଝିଅ ସୁନାର ଫୁଲ ।
ସବାସାନ ପଶ ଘୁଣୀଟି ଭୁଲ ।



ଷାରେଣୀ ସୂତା ଗଜ ମୁକୁତା
ଛେଚଲେ ଛୁଟିକି ପଡ଼େ ।
ସରଗରୁ ଖସି ଗୋଟି ଗୋଟି ହୋଇ
ମାଟିରେ ଧୂଳିରେ ଗଡ଼େ ।
ହାତରୁ ପଡ଼ଇ ବୋହୂ
ପାଟିରେ ଥୋଇଲେ
ପାଟି ଅଇଯାଏ
କଏ ସେ ପାରିବ କହୁ ।



ଆ ଆ ପାରା—ପାଣି ଟୋପେ ପିଇବୁ ।
ମୋ ହାତେ ଦେ ଧରା—
ଭାତ ଡାଲି ଖାଇବୁ ।

ଉଡ଼ ଉଡ଼ ଖରରେ—ଘୁମ୍ ଘୁମ୍ ଗୀତ ଗାଇ
ଥକଥିବୁ ପରରେ—ମୋ ପାଖରେ ଶୋଇବୁ ।
ଆମ ଘରେ ଅଛୁ ନାହାକା ଶୁଆଟି
ନାଆଁଟି ତାହାର 'ମୁନ୍ନୁ' ।
ଖେଳେଇ ଖେଳେଇ କଥା କହିବାରେ
ମୁନ୍ନୁଟି ତ ଭାରି ପଟୁ ।
ବୁଟ ଦାନା ଖାଇ-ଦୁଧ ଟୋପେ ପିଇ
ପଞ୍ଜୁରୀରେ ସିଏ ଥାଏ ।
ରାତି ପାହୁ ଦାଗ ଫରଚ୍ଚ ଦଶିଲେ
"ହରେ ରାମ କୃଷ୍ଣ" ଗାଏ ।

□

ହାପୁଡୁ-ଆପୁଡୁ ଦୁଇଟି ଭାଇ
ସାନ, ବଡ଼ ବାଣ ହୁଅନ୍ତି ନାହିଁ ।
ସାଙ୍ଗ ହୋଇକରି ଖାଆନ୍ତି ଭାତ
ସାଥି ହୋଇକରି ଯାଆନ୍ତି ଯାତ ।
ଗୋଟିଏ ଶେଯରେ ଶୁଅନ୍ତି ଦୁହେଁ
ହସ ଫୁଲ ଫୁଟେ ତାଙ୍କର ମୁହେଁ ।
କଳି ଗୋଳ କେବେ କରନ୍ତି ନାହିଁ
ହାପୁଡୁ-ଆପୁଡୁ ଦୁଇଟି ଭାଇ ।

□

ଡେଙ୍ଗା ସର ସର ନଡ଼ିଆ ଗଛ
ଆକାଶକୁ ଟେକ ମଥା ।
ଚନ୍ଦ୍ର-ସୂର୍ଯ୍ୟ-ତାରା-ସଭିଙ୍କ ସାଥିରେ
ଦିନରାତି ହୁଏ କଥା ।
ଡେଙ୍ଗା ସର ସର ନଡ଼ିଆ ଗଛଟି
ପତର ତାହାର ସରୁ ।
ଆମେ ସବୁ ଯେବେ ଗଛ କାଟି ଦେବା
ମାଟି ପାଲଟିବ ମରୁ ।

□

ବୁଢ଼ୀଟିଏ ଥିଲା ପାକୋଇ
ନାଆଁ ଟି ତାହାର ନାକୋଇ ।
ସବୁବେଳେ ହୁଏ ଧକେଇ
ଟିକକେ ପଡାଏ ସକେଇ ।
ଧର ଥରେ ଗୋଟେ ଟୋକେଇ
ଯାଇଥିଲା ତାଳ ଗୋଟେଇ ।
ପାଇଲା ଗୋଟାଏ ନଟେଇ
ବୁଦ୍ଧିଟିଏ ଦେଲା ଖଟେଇ ।
ନାତୁଣୀକୁ ଦେଲା ପଠେଇ
କହିଲା "ନହୋଇ ମଠେଇ ।
ଶିଖିଆ ତୁ ସୂତା କଟେଇ
ଅଭାବକୁ ଦେବା ହଟେଇ ।
ଖାଇବା ସନ୍ଦେଶ, ମିଠେଇ
ହସି ହସି ଯିବା ଲଟେଇ ।

□

ବୁଢ଼ିଆଣୀ, ବୁଢ଼ିଅଣୀ
ସୂତା କାଟି ଦେଏ ।
ତୋ ସୂତାରେ ବୁଣିବି ମୁଁ
ପାଟ ଲୁଗାଟିଏ ।
ଚକ ମିକ ତା ଧଡ଼ିରେ
ଫୁଟାଇବି ଫୁଲ ।
ପଣତଟି କରୁଥିବ
ଆଖି ଝଲ ମଲ ।
ଆମ ମାଆ ପିନ୍ଧି ତାକୁ
ଯାତ ଦେଖି ଯିବେ ।
ତୋ ପାଇଁ ମୋ ପାଇଁ
ଖେଳନା ଆଣିବେ ।
ତୁ ଖେଳିବୁ ମୁଁ ଖେଳିବି
ଆମ ଘରେ ବସି ।
ବାଣରୁ ଡାଳି ଖାଇବା
କାକୁଡ଼ିର ଜସି ।

□

ଇଚଡ଼ ମିଚଡ଼ ଦେଉଳ ଖେଚୁଡ଼ି
ସବୁଠୁ ଲାଗଇ ମିଠାଟି ।
ବାଟ ଘାଟ ନାହିଁ ସୁର ପଶିଯାଇ
କେମିତ ହୋଇଲା ପିଠାଟି ।
ପଇଡ଼ ପାଣି-ନଡ଼ିଆ ଜାଣି
କେଉଁ ବାଟ ଦେଇ ପଶିଲା ପାଣି ।
ଏମିତ ମଧୁର ଲାଗିଲା !
କୁନି ପିଉ ପିଉ ଟିକି ଗିଲାସରେ
ଆଉ ଟୋପେ ଦୁଧ ମାଗିଲା ।



ଉଲା ଉଲକା-ବାଲୁଙ୍କି ଶିକା,
ମହାନଦୀ କୂଳେ ବୁଲିବୁ ଏକା
ନଈ ପାର ହେବୁ ଚଢ଼ି ନଉକା
କପିଳାସ ବଣେ ଖାଇବୁ କୋଳି
କୋଳି ଖାଇସାରି ଖେଳିବୁ ଦୋଳି ।
ପଦ୍ମଫୁଲ ଶିଖିବୁ ଦେବୀ ନଈରେ
ଠାକୁର ଦେଖିବୁ ପୁରୀ ମନ୍ଦିରରେ ।
ଗଡ଼ଗଡ଼ିଆରେ ବାଲି ଯାତରା
ଖାଇବୁ ସେଇଠି ଲଡ଼ୁ-କାକରା ।
ବଡ଼ ଓଷା ଦିନ ଧବଳେଶ୍ବରେ
ଗଜ ମଣ୍ଡା ପିଠା ଖାଇବୁ ଭୂରେ ।
ଭୁବନେଶ୍ବରରେ କୋରା, ଉଖୁଡ଼ା
ଖାଇ, ଘରପାଇଁ ବାନ୍ଧିବୁ ପୁଡ଼ା ।



ଖରାଦିନ ଆସିଗଲା
ଦୂବ, ଘାସ ସବୁ ମଲା ।
ଶୁଖିଲା ପୋଖରୀ, ନଈ ।
ମାଛଙ୍କୁ ପଡ଼ିଲା ଶନି ମହାଦଶା,
ଯଦିଏ ଖୋଜିଲେ ଥୁଇ ।

ଝାଳ ସର ସର ବୋହଲ
ଦହି, ସରବତ, ସଜ ପଖାଳକୁ
ଆମ ପୁଅ ଭଲ ପାଇଲା।



କଦଳୀ ଗଛଟି ପତର ଛତାଳେ
ଗଛକୁ ପୋଡ଼ିଲେ ଖାଖାର ।
ଗାଁ ଗୋଷ୍ଠାଭରେ ସବୁଜ ଭିତରେ
ଅମର ପୁଅଟି ସାଉ ।
କାହାର ସାଥିରେ କରେ ନାଁ କଳି
ଅଣ୍ଟ ହୁଏ ନାଁ ଧୂଳିରେ ଗଡ଼ି ।
ମଇଳା କରେନାଁ। ଦହୁଟି ଜମା
ସୁରୁସ ରଖଇ ସେତେକ ଜାମା ।
ଖାଇବା ଆଗରୁ ଧୁଏ ସେ ହାତ
ଛବ ବହି ଧରି ପଢ଼ଇ ପାଠ ।
ସବୁଜ କଥାକୁ ମାନଇ ଯିଏ
ତାଆ ଭଲ ନାହିଁ ପିଲଟି କଏ ।



ଆଖୁ ପତରଟି ନହି, ନହିକାରେ !
କାଉଁଶ ପତର ସରୁ ।
ପିଇଦେ ଧନରୁ ଖୀର ଚାଟିଆକ,
କାହିଁକ ଜଞ୍ଜାଳ କରୁ ?
ବାପା ଯାଇଛନ୍ତି କଟକ ସହର
କାଲିକ ଆସିବେ ଫେର ।
କେତେ ନୂଆ ଚଜ ତୋହର ପାଇଁକ
ଆଣିଥିବେ ସାଙ୍ଗେ ଧରି ।



ସ୍କୁଲରେ ପିଲାଏ ବଣକୁ ଯିବା
ବଣରେ ପାଚିଲା ଅମ୍ବ ଖାଇବା ।

ଆମ୍ଭ ଖାଇ ଖାଇ ଆସିଲେ ବାଘ
ଦଉଡ଼ର ତା'କୁ ବାନ୍ଧବା ଆଗ ।
ମିଳ ମିଶି ତା'କୁ ଅଣିବା ଟାଣି
ପିଇବାକୁ ଦବା କୁଣ୍ଡା ତୋରାଣି ।



ବାଘ, ଭାଲୁ, ଘୋଡ଼ା,
ସିଂହ ଯୋଡ଼ା, ଘୋଡ଼ା ।
ଠେକୁଆ, ହରଣ, ହାତ,
ନେଉଳ ଗଧ ପାଢ଼ ।
ଗାଈ, କୁକୁର, ପୁଷି,
ଛେଳି, ମେଣ୍ଢା ମୂଷି ।
ଶୁଆ, ବଣି, କାଉ,
ଏମିତ କେତେ ଆଉ ।
ସଭିଏ ତୋ'ର ସୃଷ୍ଟି,
ପଢ଼ାରୁ ବସି ପାଠ ।
ସୁନା ପୁଅଟି ମୋର,
(ତାଙ୍କୁ) ମାରବୁ ନାହିଁ ମାଡ଼ ।



ବାଡ଼ି ପଛପଟେ ବାଉଁଶ ବୁଦାଲୋ
କାଟିଗଲ ସବୁ ବତା ।
'ମିଳି' ଯାଇଥିଲ ପାଠ ପଢ଼ିବାକୁ
ଭାଇ ଧରିଥିଲେ ଛତା ।
ଛତାରେ ରେଶମ କନା ।
ଠନ ରଥେ ବଜେ ଠନ ଠାକୁରଙ୍କି
ମନ ଥପୁ କର ଅନା ।



ବାଇଆ ମାଆଙ୍କେ ସବୁ କାଟେଣୀ
ପୁଅକୁ ଶିଖାଇ ପାଟପଡଣୀ ।
ଝିଅକୁ ଶିଖାଉ ନେତ ।
ଆପେ ଶିଖଥାଉ କଳାମେଘି ପାଟ
ସମ୍ବଲପୁରର ଶୋ'ଭ ।
କଳା ମେଘ ବରଷିଲା ।
ବାଇଆ ମାଆର ଟିକ ପୁଅଟିତ
ଓଦା ବୁଡୁ ବୁଡୁ ହେଲା ।



କାଳିଆ ବଳଦ ଗଳାରେ
ଘାଣ୍ଟି ଧୁଡୁ ଧୁଡୁ କଲାରେ
ଭାତ, ଡାଲି ଦେଲା ଖାଇ
'ଭୁଜା ପାଇଁ କିଛି ନାହିଁ ।



କଅଁ ବୁଦା ମୂଳେ ବିଲୁଆ ଛୁଆ
ଡାକ ଦେଉଥିଲେ ହୁକ୍କା ହୁଆ ।
ବହି ଖାତା ମାନ ଯତନେ ଧରି
ଛୁଆ ଯାଉଥିଲା ଇସ୍କୁଲ କରି
ଡାକିଲା ଆସରେ ପଢ଼ିବ ପାଠ,
ଇସ୍କୁଲ ଏଇଠୁ ଅଳପ ବାଟ ।



ବାହାରେ ବାଃ ସୁନ୍ଦର ଆଜି
କଣ୍ଢେଇ ବାହାଘର ।
ମିନର ଝିଅ କନଆଁ ଆଉ
କୁନର ପୁଅ ବର ।
ଶଙ୍ଖ ବାଜିବ, ବାଜା ବାଜିବ
ପଡ଼ିବ ହୁଳି ହୁଳି ।
ବୋହୂକୁ ନେଇ ଆସିବ ବର
ଦୋଳାରେ ଝୁଲି ଝୁଲି ।

ବୋହୂ ପରଶା ଖାଇବ କୁନ
ପିଢ଼ା ପକେଇ ବସି ।
ହାତଟି ଧୋଇ, ପଢ଼ିବ ଶୋଇ
ବୋହୂଟି ଦବ ଘସି ।



ବାଇଚୁଙ୍ଗୁଟି ନଖାଏ ଖୁଦ
ପୁଅ ନାଆଁ ଦେଲ "ପୋଦ୍ଦାର ବଦ ।"
ପୁଅ ଶୁଆଇଲ ହଡ଼ ମୁଣ୍ଡରେ,
ଜନ୍ଦା କାମୁଡ଼ଲେ କାନ ମୂଣ୍ଡାରେ
କହିଁ କହିଁ ହୋଇ କାନ୍ଦିଲ ପୁଅ,
ମେଘ ଧାର ପର ଝରିଲା ଲୁହ ।
ପୁଅର ଲୁହକୁ ପୋଛିଲ ମାଆ,
କୋଳରେ ବସାଇ କହିଲ "ଆହା ।
ଖିଆ କରିଥିଲ ଗୃହଳ ଆଣି,
ଖୋଇ ଦେଲ ପୁଅ ମନକୁ ଜାଣି ।



ଦେଖରେ ଦେଖରେ ଗୁଣ୍ଡିଚ
ପାଚିଲ ପିଜୁଳି ଉଣ୍ଡୁଚ ।
ପାଇଲେ ସେ ଖାଇ ଦବଟି,
ବସାକୁ ପଳେଇ ଯିବଟି ।
ଲଙ୍ଗୁଡ଼ ଲମ୍ବେଇ ଦେଇଚ,
ଗଛ ଡାଳ ଯାକ ଡେଇଁଚ ।
ଡାଳରୁ ଝଡ଼ୁଚ ପତର,
ଗୁଣ୍ଡିଚ ମୂଷାଟି ବଜାର ଯାଇ ।
କଣି ଅଣିଥିଲ ଅତର ।



ଆ'ରେ ଆ କୁନ ବାଛୁରି
ଘାସ, କୁଣ୍ଡା ଖାଆ
ଖପର, ଖପ ଡେଇଁ ଡେଇଁ ତୋ
ମାଆ ପାଖକୁ ଯାଆ ।

ମାଆଟି ତୋର ଦେଲେରେ କ୍ଷୀର
ପିଇବ ଆମ ପୁଅ ।
କ୍ଷୀରରୁ ମୁଁ କରିବ ଦହି,
ଛେନା, ଲହୁଣୀ, ଘିଅ ।



ଶୁଆର ନାଲିଆ ଥଣ୍ଟ
ସକାଳ, ସଞ୍ଜରେ ଦେଉଳରୁ ଶୁଭେ ।
ଆଳତି ଧୂପର ଘଣ୍ଟ ।
ଘଣ୍ଟ ବାଜେ ଢାଇଁ ଢାଇଁ,
କୁନା ଖାଉଥିଲା କାକରା ଗୋଟିଏ
ଝାମ୍ପି ନେଇଗଲା କାଉ ।
କଇଁ କଇଁ କାନ୍ଦେ କୁନା ।
ଆଉ ଗୋଟିଏ ମୁଁ ଦଉଚି ନେଏରେ
ମନ କର ନାହିଁ ଊଣା ।



ନଳି ଗୋଡ଼ିଆ ବଗ-ଗୁଲଇ ଡଗ ଡଗ
ମାଛକୁ ଥାଏ ଛକି- ପଡ଼ଇ ନାହିଁ ଥକି ।
ପାଇଲେ ଗୋଟେ ଚାଆକୁ କରି
ଗିଳି ଦିଏ ସେ ଅଗ ।



ନେଉଳ କାନରେ ଗୁଣା,
ବିଲେଇ କରୁଚି ଠାକୁର ପୂଜାଟି
ମୂଷା ଧୂପଦିଏ ଝୁଣା ।
ଚୁଚୁନ୍ଦ୍ରା ଦୀପ ଜାଳେ ।
ତାମସା କାଉର ଆଖି ଲଖି ଅଛି,
ଲଡ଼ୁ, ଚଣା ଭୋଗଠାରେ ।



ବଗ ଯାଇଥିଲା ନଈ ଆଡ଼େ ବୁଲି
ଧରି ଆଣିଥିଲା ମାଛ ।
ବଗୁଲି କରିଲା ବଗୁଲିଙ୍କୁ ଡ଼ାକ
ସଅଳ ସଅଳ ବାଛ ।
ବଗୁଲି ବାଛିଲା ବସି ।
ପିଆଜିଆ ଚିଲ ଉଡ଼ି ବୁଲୁଥିଲା
ଝାମ୍ପି ନେଇଗଲା ଆସି ।



ମୋ ପୁଅ ଖେଳିବ ହୋଲି ।
ଅବିର ସବୁକୁ ଅଜା, ଆଈଙ୍କର
ଢ଼ଙ୍କସାକ ଦେବ ବୋଳି ।
ଆସିଗଲେ ସାଙ୍ଗ, ସାଥି ।
ପିଚକାରୀ ଧରି, ରଙ୍ଗ ପାଣି କରି
ଖେଳରେ ଯିବ ସେ ମାତି ।



ବଡ଼ାସ ପବନ ହେଲା
ପୁଅକୁ ଉଠେଇ ଦେଲା ।
ଶୋଇଥିଲା ଆମ ମୁନା
ଜଦ ତା'ର ଜଳ ଚୂନା ।
ସପନରେ ଧରି ମିଠେଇ
ଖାଉଥିଲା ସିଏ ଲଠେଇ ।
ଆଖି ତା'ର ଦେଲା ଫିଟେଇ
ମା' ପାଖକୁ ଦେଲା ପଠେଇ ।



ଧୋ' ରେ ବାଇଆ ଧୋ
ଆମ ପୁଅ, ଝିଅ ପଢ଼ିବେ ବସି
ତୁ ଏବେ ତୁ ଧୋ, ଧୋ ।
ଚୁନ, ଚାନ ହେଇ ବ' ।
ପଢ଼ିସାରି ତତେ ଡ଼ାକିବେ ଯେବେ
ଛୁଟି ଆସିବୁ ତୁ ସଅଳ ତେବେ ।

ମହିଁ ଅଗଣାରେ ପକାଇ ସପ
ଜେଜେମା'ଙ୍କ ଠାରୁ ଶୁଣିବ ଗପ ।

□

ମିଆଉଁ ମିଆଉଁ ବିଲେଇ ବୋବାଏ
କୁକୁର ବୋବାଏ ଭୋ ।
ହମ୍ବା ହମ୍ବା ଟିକି ବାଛୁରି ବୋବାଏ
ବିଲୁଆର ହୁକ୍କେ ହୋ ।
କାଆ-କାଆ-କାଆ କାଉ ରାବ ଦିଏ
କୋଇଲିଟି କୁହୁ, କୁହୁ ।
ଆମ ପୁଅ କଥା ସବୁଠାରୁ ମିଠା
ସତେକି ଝରଇ ମହୁ ।

□

ଉଦୁ ଉଦୁମା-ତାଳ ଗୋଟମା

ଝୁଙ୍ଗୁର ପିନ୍ଧି ନାଚୁଛି ପୁଷି
ଝୁମୁରୁ ଝୁମ୍, ଝୁମ୍‌କୁ ଝୁମା ।
ଗଧ ବଜାଏ ଡୁବ୍ବ ତବଲା
'ବାଘ'ର ହାତେ ଖୋଳ ।
'ହନୁ' ମୁହଁରେ ଯୋଡ଼ି ମହୁରି
ହାତୀ ଭାଗରେ ଢୋଲ ।
ଟୋପି ଲଗାଇ ବିକୁଛି ଭାଲୁ,
ବାଦାମ, ବାରମଜା ।
ବଣ ଭିତରେ ନାଚ ହଉଛି,
ଦେଖିବ ଆସ ଅଜା ।

□

ଝଡ଼ ବରଷା
ଝାଙ୍କି ଦେଇଗଲା ଚଢ଼େଇ ବସା ।
ଚଢ଼େଇ ତୁ ଆମ ଘରକୁ ଆ
ରାନ୍ଧି ସାରିଲେଣି ଆମର ମାଆ ।
ଭାତ, ଡାଲି, ଭଜା, ତିଅଣ ଖାଇ
ମୋ ପାଖରେ ଆସି ପଡ଼ିବୁ ଶୋଇ ।

□

ଉଡ଼ା ଜାହାଜରେ ଉଡ଼ାଜାହାଜ
କୁନା କୁନଙ୍କି ତୁ ଉଡ଼େଇ ନେବ ।
ଦେଶ, ବିଦେଶ ବୁଲେଇ ଦେବ
ଦୁନିଆଁ ଟାକୁ ଦେଖେଇ ଦେବ ।
ବଉଦ, ଦୋଳାରେ ଝୁଲେଇ ଦେବ
ସ୍ୱର୍ଗ ମୋଠ ସାଙ୍ଗେ ମିଳେଇ ଦେବ ।
କୁରୁ କୁରୁ କରି ହସେଇ ଦେବ
ମୋ କୋଳରେ ଆଣି ବସେଇ ଦେବ ।
ରାତି ପାହି ଯେବେ ସକାଳ ହେବ
କାହୁ ଆସି କାଆ କାଆ ରାବିବ ।
ବଗିଚ୍ଚ ହୋଇବ ଫୁଲରେ ଭରି
ଗଛରୁ ଗଡ଼ିବ କଅଁଳ ଖରା ।
ଖରା ନ ପଡ଼ୁଣୁ ଉଠିବ ଯିଏ
ସୁନା ପୁଅ ଝିଅ ହେବଟି ସିଏ ।



ଚେଙ୍ଗ, ବେଙ୍ଗ ଦୁହେଁ ବସିଲେ ମିତ
ପୋଖରୀ କୂଳରେ ଗାଇଲେ ଗୀତ ।
ନାଚିଲେ ଧିନାକ, ତାଧିନ ଧିନ
ସୁନା ଝିଅଟିଏ ଆମରି ମିନ ।



ଘଣ୍ଟା ବୁଲେ ଟିକ୍ ଟିକ୍
ଆମ ପୁଅର କାମଟି ଠିକ୍ ।
ଅସଲ୍ ସତ କଥାଟି ତା'ର
ଜମା ସେ କାନ୍ଦେ ନାହିଁ ।
ଝରଉ ଢେଏ ମଣ୍ଡୁ ଝରଣା
ବସିଲେ ଗୀତ ଗାଇ ।
କାହାର ସାଙ୍ଗେ ଲଗାଏ ନାହିଁ
ଜମାରୁ ଝିକ୍ ଝିକ୍ ।
କୁନି ପାଦରେ ଗଡ଼ାଇ ବଲ୍
ହସଇ ଫିକ୍ ଫିକ୍ ।



ବିଲେଇ ଧରେ ପାରବା ମୁଣ୍ଡି
ଓଧକୁ କହେ "ରଖ୍ ରଖ୍" ।
ହନୁଠ୍ ଖାଇ ଜବର ମାଡ଼
ବିଲୁଆ କାନ୍ଦେ ହକ୍ ହକ୍ ।
ବାଘ ଖାଇଛି ମାଉଁସ ପେଟେ
ବାନ୍ତି କରୁଛି ଭକ୍ ଭକ୍ ।
ବୁଢ଼ା ଘାଲୁଛି ବାବାଜୀ ହୋଇ
ମାଳି ଗଡ଼ାଏ ଠକ୍, ଠକ୍ ।
ହରିଣ ଧାଇ ଝରଣା ଯାଇ
ପାଣି ପିଏ ସେ ଢ଼କ୍ ଢ଼କ୍ ।
ହାତୀ ଗୋଡ଼ରେ କଣ୍ଟା ପଶିଛି
ହେଉଛି ଘାଅ ଧକ୍ ଧକ୍ ।
କୁନି ମଥାରେ ଜଳେ ଟିକିଲି
ଦିଶୁଛି କେଡେ ଜକ୍ ଜକ୍ ।
ମାଆଙ୍କ ହାତେ ପିଠେଇ ଦେଖି
କୁନାର ପାଟି ଟକ୍ ଟକ୍ ।



ନାହୁଣ୍ଡ ମାରୁଛି କାତ
ଟିକି ଗଛଟିର କଅଁଳ ପତରେ
କେହି ମାର ନାହିଁ ହାତ ।
ଗଛରେ ଫଳିବ ଫଳ ।
ପାଚିଲା ଫଳକୁ ଖାଇଲେ ସବୁର
ଦେହରେ ବଢ଼ିବ ବଳ ।
ଗଛ ପତ୍ର ଦିଏ ଛାଇ ।
ଟାଣ ଖରା ହେଲେ ସଭିଙ୍କର ମନ
ଛାଇରେ ବସିବା ପାଇଁ ।



ଅଜାଙ୍କର ମୁଁ ନାତି ।
ଶୁଣିଛି ମୋର ସାଥି ।

ସଙ୍ଗାତ ସାଙ୍ଗ—ଶୁଆ,
ମଇଫ—ଶାଇ ଛୁଆ ।
ଭଲ ପାଏ ମୁଁ ବଗ, ବଗୁଲି,
ବଣି, ଠେକୁଆ ଛୁଆ ।



ଅମଗ୍ର ମାଛ
ବାଶ ପଛଆଡ଼େ ସାହାଡ଼ା ଗଛ ।
ସାହାଡ଼ା ଗଛରେ ବଣିର ପୁଅ
ମାଆ ପାଇଁ ଝୁଣ ଗାଳୁଛୁ ଲୁହ ।
ମାଆ ତ ଯାଇଛୁ ଆଧାର ଆଣି
ଆସିଲେ କରିବ ପତର ପାଣି ।
କୋଳରେ ବସେଇ ଖୁଆଇ ଦବ
ପିଠିକୁ ଆଉଁସି ଶୁଆଇ ଦବ ।



ଝୁରୁଲୁ ପୁରୁଲୁ ଲଟେଇ
ଢୋ-ଢୋ-ବାଣ ଫୁଟେଇ ।
ଢୋଲ-ପେଁକାଳି ବଜେଇ
ଫୁଲରେ ମଟର ସଜେଇ ।
ଆସୁଚି ବଲୁଆ ବର ।
ହଳଦୀ ଲଗେଇ ସିନ୍ଦୂର ପିନ୍ଧେଇ
କନିଆଁକୁ ସଜକର ।
ସଭିଲେ କୁଣିଆଁ ଚରଣ
ବାହାଘର ସାରି ବର ବାହୁଡ଼ିବ
ଦନ ହୋଇଗଲା ଫରଣ ।



ଉକୁଲୁ ମୁକୁଲୁ ପୁକୁଲୁ ପୁଟି
ନେଉଳ ଦଉଚ ଧାନକୁ କୁଟି
ଗୃହଳ ପାଚୁଡ଼େ କୋଟଣୀ ପାଣ
ଦହି ଜାଲଦଏ ଟାଣୁଆ ଖସ

ଗଗ୍ର, ବାଲ୍‌ଟି ଆଣି
ବଣି କାଢ଼େ ପାଣି ।
'ଚୂଟିଆ ପାରେ ଚୂଳ ।
କାଉ ଆଣୁଚ ଶୁଖିଲ ଜାଳ
ଗଛରୁ ଗଛ ବୁଲି ।
ଭାତ ହବ, ଡାଲି ହବ,
ହବ ଖଟା, ଖିରି ।
ସଭିଏ ମିଳି ଭୋଜି ମଉଜ,
କରିବେ ମନ ଭରି ।



'କକ'ରେ କକ ବୋବେଇ ଦେଏ
ଢେର ସବୁଙ୍କୁ ଢେବେଇ ଦେଏ ।
ମାଉଁସ ଭାତ ଖାଇବୁ
ମଜାରେ ଏଠି ରହିବୁ ।
ରହିବା ପାଇଁ ଦେବି ମୁଁ ଘର
ଶୋଇବା ପାଇଁ ପଲଙ୍କ ସାର ।
ପିନ୍ଧିବୁ ଯୋତା, ଗରମ ଜାମା
ଥରିବୁ ନାହିଁ ଶୀତରେ ଜମା ।
ବରଷା ଦିନେ ତୋ ମନ ଜାଣି
କିଣି ଦେବି ମୁଁ ଛତା ।
ଖରା ଦିନରେ ସର୍ବତ ପିଇ,
ଥଣ୍ଡା ରଖିବୁ ମଥା ।



ଅଜାଟିକୁ ଆଇଟିଏ
ନାତିଟିକୁ ନାତୁଣୀ ଟିଏ ।
ନାତି ନାଆଁ ଭୋଳା
ନାତୁଣୀ ଝୁଲେ ଦୋଳା ।
ଭୋଳାର କାନ କଟା
ଖାଏ ସେ ଭାତ ଖଟା ।
ଖୁଜୁ ବୁଜିଆ ପିଲା
ସବୁ କଥାରେ ଢିଲା ।

ନାତୁଣୀ ନାଆ "ସୁଲେଇ"
ଆଉ ଜଅନ୍ତି ଭୁଲେଇ ।
ଶୁଏ ଆଉ ପାଖରେ
ବସେ ତାଙ୍କ କାଖରେ ।
ପାଖ ଜମା ଛାଡ଼େନା –
ସଗି ଭୁଷି ଗଢ଼େନା ।

□

ଟୁଇକୁ ମୂଷିରେ ଟୁଇକୁ ମୂଷି ।
ମିଛଟାକୁ ପିନା ହଉଚୁ ଖୁସି ।
ଛକିଲଣି ତୋତେ କୋଦେଇ ପୁଷି ।
ପକେଇ ଯାଅରୁ ଗାତକୁ ଖସି
ନହେଲେ ପଛକୁ ଭବରୁ ବସି
କୋଦେଇ 'ପୁଷି'ର ମୁଣ୍ଡରେ ଚଢା
ଶୁଖୁଆ ତାହାକୁ ଲାଗୁଚି ପିତା,
ଶୁଖୁଆ ଦେହରେ ରକତ ନାହିଁ,
ଖାଇ ଖୁସି ହବ ତୋତେ ସେ ଖାଇ ।

□

ଆଜି ଆମ ପୁଅ ଜନମ ଦିନ ।
ଖୁସିରେ ଭସୁଚି ସବୁଶ ମନ ।
ଆସିଛନ୍ତି ତା'ର ଯେତେକ ସାଥି ।
ଯାଇଛନ୍ତି ସବୁ ଖେଳରେ ମାତି ।
ମାଆ ରାନ୍ଧିଛନ୍ତି ଖିରି, ଖେଚେଡ଼ି
ଖଟା, ଶାଗ, ଭଜା, ଦହି ପାରେଡ଼ି
ସଭିଙ୍କି ବସେଇ ପରଶି ଦେବେ
ଖାଇ ପିଇ ସବୁ ଘରକୁ ଯିବେ ।

□

ଗଧ ଖୋଲିଚି ଡାକ୍ତର ଖାନା, ଡାକୁଚି ଆସ ଆସ
କିଏ ଭୋଗୁଚି ଅଣ୍ଡା-ଶରଦ- କିଏ ଭୋଗୁଚି କାଶ
କାହାକୁ ଝାଡ଼ା, କାହାକୁ ଜର
କାହା ଆଁଖିକୁ ଦିଶୁନି -ଭଲ ।

କାହାର ପେଟ ଫାମ୍ପି ଯାଇ
ବଳ ନାହିଁ କିଏ ପାରୁନ ଚାଲି ।
ଆସ ଦେଖିବ ମୁଁ ଡାକତର
ଔଷଧ ଦେବ ଥରକୁ ଥର ।
ତୁମ କାନ୍ଦୁରା ମୁହଁରେ ମୁହିଁ ଖେଳାଇ ଦେବି ହସ ।



ଦାଆ କାଟି ଯାଏ ଧାନ ।
'ବୁଲୁ' ବୁଲୁଥିଲେ ପାଦ ତଳେ ତା'ର
ଫୁଟୁଥାଏ ଫୁଲ ମାନ ।
କହନ୍ତୁ ଚଇତ ବାଆ ।
ବୁଲୁ ବୁଲୁ କରି କହିଦେବ ସିଏ
କଅଣ ତାହାର ନାଆଁ ।
ପୋଖରୀରେ ଫୁଟେ କଇଁ
ଜମାରୁ ତାହାକୁ ବୁଝେନି ବରଷ
ପଡ଼ିଲାଣି ସିଏ ବନ୍ଧୁ ।
ମାଘ ମାସେ ଖରା ଶୀତ ।
ଜେଜେ ମାଆ କୋଳେ ଗାଇଲାଣି ବସି
ମଜା-ମଜଲିଆ ଗୀତ ।
ଖରା ବରଷାକୁ ଛତା ।
ସବୁର ଆଖିରୁ ଜଳ ଗଡ଼ିଯିବ
ଶୁଣୁଥିଲେ ବୁଲୁ କଥା ।



ବାଆ ଚଢ଼େଇରେ ବାଆ ଚଢ଼େଇ,
ଯାଆ ଉଡ଼ିଯାଆ ଡେଣା ମେଲେଇ ।
ମାଡ଼ି ଆସିଲାଣି ବରଷା ବାଆ,
ଚହିଁ ରଖିଥିବ ତୋହର ମାଆ ।
ତୋତେ ଦେଖି ସିଏ ଦବରେ ହସି
କାଖ କରି, ଦବ ପିଠି ଆଉଁସି ।
କୋଳରେ ବସାଇ କରିବ ଗେଲ
ଲଗାଇ ଦବଟି ହଳଦୀ ତେଲ ।

ଝିଲ୍ଲି-ପୁଲ୍ଲି, ମିଠା ଦବ ଖୁଆଇ
ତାଳ ଝୁଲଣାରେ ଦବ ଝୁଲାଇ ।
ପାଖରେ ଶୁଆଇ କହିବ କଥା,
'ହୁଁ' ମାରବୁ ତୁ ହଲାଇ ମଥା ।

□

ଦେଶରେ ଜହ୍ନ ତୁ ଆକାଶୁ ଚାହିଁ
ତୋ ପାଖକୁ କୁନା ଯିବଟି ଧାଇଁ ।
ରକେଟ୍‌ରେ ବସି ଯିବ ସେ ଚାଲି
ତୋ' ଘରେ ବସି ମାରିବ ତାଳି ।
ସାଙ୍ଗେ ନେଇଥିବେ ଟିକଲ୍ ମୀନା ।
ନାଚିବେ ସଭିଏ ତା ଧିନ ଧିନା ।

□

ଖରା ମାଆ ଖରା ଦେ'
ପୁଅର ଜାମା ଶୁଖେଇ ଦେ ।
ଅମ୍ବ ପଣସ ପଚେଇ ଦେ
ନେପାଳୀ ମୂଷାକୁ ନଚେଇ ଦେ ।
କାନ୍ଦୁରା ପୁଅକୁ ହସେଇ ଦେ
ଓଠରୁ ମୁକୁତା ଝରେଇ ଦେ ।

□

କାଉ ନେଇଗଲା କାଣ୍ଡ
ଦାଅ ଅସିଲେଣି ଦୋଳ ବେଗ ଖାଇ
ଉଚ୍ଛୁଳା ପଡ଼ଇ ଦାଣ୍ଡ ।
କାଉ ରବେ ଘନ ଘନ ।
ଯେତେ ଭାତ, ଡାଲି ମାଛ ଖାଉପଛେ
'ମିଠା' ରେ କୁନାର ମନ ।
ଉଡ଼ି ଉଡି ଗଲା କାଉ ।
କୁନର କାନରେ ସୁନାର ଫୁଲଟେ
ଦଶୁଆଉ ଦାଉ ଦାଉ ।
କାଉକୁ ହେଲଣି ଜର ।
କୋଇଲିକି ଡାକ, ଉଡ଼ି ଉଡ଼ି ଯାଇ
ଡାକି ଆଣୁ ଡାକତର ।

□

ଗଛଲତା ସବୁ ଆମ ହଜର
ତାଙ୍କଠାରେ ଦବା ଭଲ ନଜର ।
(ତାକୁ) ହାଣିବ ନାହିଁ କ ମାରବା ନାହିଁ
ସେ ଦେବ ଆମକୁ ଶୀତଳ ଗୁଇ ।
କେତେ ଫୁଲ ଫଳ କେତେ ପତର
ଗଛଲତା ସବୁ ଆମ ହଜର ।



ଗାଈ ଖାଏ କୁଣ୍ଡା-ପେଜ, କୁନା ପିଏ କ୍ଷୀର
ପେଟେ ପେଟେ କ୍ଷୀର ପିଇ ହବ ବୀର ।
ଗାଈ ଗଲେ ଚରିବାକୁ ବାଛୁରଟି ଘରେ
ମାଆକୁ ପାଇଲେ ପାଖେ ହମ୍ବା ହମ୍ବା କରେ ।



ଘର ପାଖେ ଥିଲେ ବଗିଚ୍ଚ ଗୋଟିଏ
ସୁନ୍ଦର ଦିଶଇ ଅତି ।
ଜାତି, ଜାତି ଫୁଲ ସାଥିରେ ଖେଳନ୍ତି
ମହୁମାଛି, ପ୍ରଜାପତି ।



ଘିରି ଘିରି ଘିରି ବୁଲୁଚ ବଜୁଳି ପଙ୍ଖା
ଖଗ୍ବନ ଯାକ ଗରମକୁ ନାହିଁ ଦକା ।



ତୁଳି ଆଣିଦିଅ, ରଙ୍ଗ ଅଣିଦିଅ
ତୁଳି, ରଙ୍ଗରେ ଛବି ଅଙ୍କିନ
ଆମର ସୁନା ପୁଅ ।
ଆଙ୍କିବ ଗଛ, ପତର, ଡାଳ
ପାହାଡ, ନଈ, ପୋଖରୀ, ନାଳ ।
ଜାତି ଜାତି ଫୁଲ-ଫଳ ବଗିଚ୍ଚ
ଆଉ ଯେତେ ଯାହା-କରିବ ଇଚ୍ଛା ।



ଧଳା 'ଖଇ' ଧଳା 'ମଲ୍ଲୀ' ଧଳା ପୁଣି 'ଟଗର'
ଯୁଇ, ଯାଇ, ଫେନା, ଧଳା, ଧଳା ଚମ୍ପା-ମନ୍ଦାର ।
ଧଳା 'କାଶତଣ୍ଡି ଫୁଲ' ଧଳା ଗଙ୍ଗ ଶିଉଳି
ଧଳା ବଗ-ଧଳା ଚନ୍ଦ୍ର, କାକୁ ଦଏ ଧଉଳି ।



ଭଲ ପିଲାଟିଏ ଆମର ପୁଅ
କାହାର ପାଖରେ ଅଝଟ ନୁହେଁ ।
ଯାହା ବାଢ଼ିଦେବ ଖୁସିରେ ଖାଇ
ମାଆଙ୍କ କୋଳରେ ପଡ଼ଇ ଶୋଇ ।
ଖାଇ ସାରି ଶୋଇ ଉଠିଲେ ଖେଳେ
ବାହାରେ ବୁଲେନାଁ ବରଷା ବେଳେ ।



କଳା କାଉ ସବୁଦିନେ ଗାଉ ପାହୁ ପାହୁ
କଳା କୋଇଲିଟି ଗାଏ "କୁହୁ କୁହୁ କୁହୁ" ।
କଳା କଜଳପାତିଟି ଉଡ଼ି ଉଡ଼ି ବୁଲେ
କଳାକଳା ଜାମୁକୋଳି ପେନ୍ଥା ପେନ୍ଥା ଝୁଲେ ।
ଆଖିରେ କଜଳ ଗାର ଝଲମଲ ଦିଶେ
କଳା ଟୋପାଟିଏ ଦେଲେ କପାଳଟି ହସେ ।



ସଞ୍ଜ ହେଲେ ଚଉରା ମୂଳେ
ଦୀପଟି ମାଆ ଦିଅନ୍ତି ଜାଳି ।
ଆମର କୁନ ଓଳଗି ହୁଏ
ଦିଅଙ୍କ ପାଖେ ଜଣାଣ ବୋଲି ।
ସପଟି ପାରି-ସିଲଟ ଧରି
ମନ ଖୁସିରେ ବସଇ ପଢ଼ି ।
ପଢ଼ା ସରିଲେ, ଖାଇ ସାରିଲେ
ଶେଯ ଉପରେ ପଡ଼ଇ ଗଡ଼ି ।



ନାଲି କୃଷ୍ଣଚୂଡ଼ା ନାଲି ମନ୍ଦାର
ନାଲି ରଙ୍ଗଣୀଟି ଭାରି ସୁନ୍ଦର ।
ପୋଖରୀର ଶୋଭା ନାଲିଆ କଇଁ,
ପାଦ ଶୋଭା ନାଲି ଅଳତା ପାଇଁ ।
ନାଲିଆ ଟିକିଲି ନାଲି ସିନ୍ଦୂର
ହୋଲି ଖେଳ ଲାଗି ନାଲି ଅବିର ।
କୁକୁଡ଼ା ମୁଣ୍ଡର ମୁକୁଟ ନାଲି,
ନାଲି ଶଙ୍ଖା, ଶାଢ଼ୀ-ନାଲିଆ ଜାଲି ।

ନାଲି ବେଲୁନ୍‌ରେ କୁଲୁର ଆଖି
ଆଉ କେତେ ନାଲି ରହିଲା ବାକି ।



କାନ୍ଦନାରେ ଧନ ଆଖିରୁ ମଳି
ହାତରୁ ଆଖିରେ ଲାଗିବ ଧୂଳି,
କଥା ମାନ ତୁ ନ କାନ୍ଦୁ ଯେବେ
ରସଗୋଲା ତତେ ଦେବି ମୁଁ ତେବେ ।
କାଖ କରି ନେବି ଗାଆଁ ବୁଲେଇ,
ରେଶମ ଝୁଲାରେ ଦେବି ଝୁଲେଇ ।



ଆମ ଦେଶ ଆମ ମାଆଟି ।
ଝୁନା, ଲୁନା ଯେବେ ବଡ଼ହୋଇଯିବେ
ରଖିବେ ତାହାର ନାଆଁଟି ।



ଅବୁଝା ହୋଇରୁ କାନ୍ଦୁ ଯେବେଟି
ତହିରୁ ହୁଟିବ ବଳ ।
ନକାନ୍ଦ ଯେବେରୁ ହସିବୁ, ଖେଳିବୁ,
ସଭିଏ କହିବେ "ଭଲ" ।



ଝୁଲେଇ ଦଉଚି ଦୋଳିରେ ତୋତେ
ସୁନାପୁଅ ମୋର କାନ୍ଦନା ଏତେ ।
ଝୁଲି ଝୁଲି ଜଦେ ପଡ଼ିବୁ ଶୋଇ
ଉଠିଲେ ଖାଇବୁ ଶାକର ଦହି ।



ହଳଦୀ ରଙ୍ଗଟି ସୁନ୍ଦର
ଆମ ଝିଅ ଯେବେ ହଳଦୀ ଲଗାଏ
କରୁଥାଏ ଘର ସୁନ୍ଦର ।
ହଳଦୀଆ ପାଟ ଶାଢ଼ୀ
ହଳଦୀ ରଙ୍ଗର ସୋରିଷ ଫୁଲଟି
ସୁନ୍ଦର ଦିଶଇ ସବୁ ।

ହଳଦୀଆ 'ଗୋଡ଼ବାଣ'
କୁସୁମ, କଦମ୍ବ ସୁନାଖି, ସେବତି
କନିଅର ଫୁଲ ଜାଣ ।



ଆରେ, ଅରେ, ଅରେ ଏଇଟି କଏ
ତା ହାତରେ ଟିକି ବନ୍ଧୁକଟିଏ ।
ଖାରର ପୋଷାକ, ଖାରର ବେଶ
ଜଗିବ କହୁଚ ଆମର ଦେଶ ।



ଚେକା ଦରପଣ ମୁହଁଟି ତୋହର
ଦଶିଲଣି ସତେ କଳା ।
ଅବୁଝା ହୋଇରୁ କା'ନ୍ଦରୁଟି ଯେବେ
ବସିଯିବ ତୋର ଗଳା ।
କେମିତ ଗାଇବୁ ଗୀତ ?
କଥା ଜମା ତୋର ବୁଝି ହେବ ନାହିଁ
ହସିବେ ସଙ୍ଗାତ ମିତ ।



ଗ୍ଟେଟି ଦଗର ଗ୍ଟେଟି ନାଆଁ
ପୃରୁବ ଦଗରେ ଆମର ଗାଆଁ ।
ପଶ୍ଚିମ ଦଗରେ ମାମୁଁଙ୍କ ଘର
ଉତ୍ତର ଦଗରେ ଗମ୍ଭାର ବଲ ।
ଦକ୍ଷିଣ ଦଗରେ ପାହାଡ଼ ବଣ,
ପଶୁ ପକ୍ଷୀ ଜନ୍ତୁ କାହିଁରେ କଣ ।
ଠେକୁଆ, ହରଣ, ମିରଗ, ହାତୀ
ବାଘ, ଭଲୁ-ହେଟା, ବିଲୁଆ ପାଠ ।
ଶୁଆ-ଶାରୀ-ବଣି-ବଗ ବଗୁଲି
ହଳଦୀ ବସନ୍ତ-କାଉ-କୋଇଲି ।
ମୟୂର ସହୁତେ ରହନ୍ତ ତହିଁ—
କଳ, ଗୋଳ କେବେ କରନ୍ତ ନାହିଁ ।



ଖାଲି ରଖ ନାହିଁ ଜମାରୁ ଜାଗା
ଖାଲି, ଢିପ ସବୁ ଫସଲ ଲଗା ।
ଯତନ କରିଲେ ରତନ ମିଳେ
ଜାତି ଜାତି ଫଳ ପରିବା ଫଳେ ।



ସକାଳରୁ କୁନା ଦଉଡ଼ୁଛି ବୋଲି
ଦେହ ତା ରହୁଛି ଭଲ ।
କଅଁଳ ଖରାଟି ଦେହରେ ପଡ଼ିଲେ
ରୋଗର ଉପୁଡ଼େ ମୂଳ ।
ଗାଧୋଇବା ଆଗୁ ମାଆ ଦେଉଛନ୍ତି
ଦେହସାରା ତେଲ ଘଷି ।
"ମୋ କୁନା ଖେଳିବ ଡାକ୍ତର ସଙ୍ଗେ
ଖେଳ" କହୁଛନ୍ତି ହସି ।
ଜେଜେମା କହନ୍ତି ମଇଳା ଦିଶୁଛି
କୁନା ନଖ କାଟିଦିଅ ।
ନଖ ମଳି ଯେବେ ପେଟକୁ ଯିବଟି
ବିଗିଡ଼ି ଯିବ ତା ଦେହ ।
ଗାଧୋଇବା ବେଳେ ଅପା ଦିଏ ତା'ର
ଦେହ ସାରା ଘଷିମାଜି ।
ହସି ହସି କହେ ଆମ କୁନା ବାବୁ
ସଫା ଦିଶୁଅଛୁ ଆଜି ।



ହାତୀଟିକୁ ମୋର ସାଥିରେ ନେବ
ଆକାଶ ବୁଲାଇ ଦେଖାଇ ଦେବ ,
ଉଡ଼ାଜାହାଜରେ ବସି ।
ସାଙ୍ଗରେ ବି ମୋ ଯାଇଥିବେ ପୁଣି
ନେଉଳ, କୁକୁର, ପୁଷି ।
ବାଟରେ ଭେଟିଲେ ରକେଟ୍‌ଟିଏ
ଉଡ଼ାଜାହାଜକୁ ଛୁଇଁ ।
ବସିବୁ ସେଥିରେ ସଭିଏ ଆମେ,
ଚନ୍ଦ୍ର ଦେଶେ ଯିବୁ ଉଡ଼ି ।



ଗୁଡ଼ରେ ଗୁଡ଼, ଗୁଡ଼ରେ ଗୁଡ଼
ତୋ' ପର ପୁଅ ଯିବ ଆକାଶେ ଉଡ଼ି ।
ଆକାଶରେ-ଜହ୍ନ, ତାରାଙ୍କ ଘର
ସେଇଠିକି ଯିବ ପୁଅ ଆମର ।
ବଉଦ ପରକା ଲାଗିବ ପିଏ
ଜହ୍ନଟିଏ ପର ହସିବ ।
ଆକାଶ ଗୋଟାକ ବୁଲି ବୁଲିକା
ସବୁ ଦେଖିସାର ଆସିବ ।



ବେଙ୍ଗୁଲୀ ବେଙ୍ଗୁଲୀ ଦେଏଲେ ପାଣି
ମାଆ ରଖିଛନ୍ତି କାକରା ଛାଣି ।
ବାପା ଆଣିଛନ୍ତି ସନ୍ଦେଶ, ଝଜା,
ଛେନା ପୋଡ଼ପିଠା, ମୁଡ଼ୁକୁ, ଗଜା ।
ଖୁଡ଼ୀ ଛାଣିଛନ୍ତି ଗରମ ପୁରି
ମୁଆଁ ବଲଛନ୍ତି ଜେଜେମା ବୁଢ଼ୀ ।
ଅପା କରଛନ୍ତି ଖାକୁର ଭଜା
ଚାଖିଲେ ଜାଣିବୁ କେମିତ ମଜା ।
ତୁ, ମୁଁ ଦୁହେଁ ଖାଇବା ବସି
କର୍ କର୍ ହୋଇ ଦେବାଟି ହସି ।



ମେଘରେ ମେଘ ପାଣି ଦେଏ
ମାଟି ସେ ପାଣିକୁ ଶୋଷି ନେଏ ।
ଶୋଷି ନେଇ ଗଛ ଉଠା
ଗଛରେ ପୁରୁ ତୋଟା-ପଠା ।
ଫୁଟୁ ଫୁଲ-ଫଳୁ ଫଳ
ଆମର ପୁଅ ଖାଉ ସେ ଫଳ ।
ବଢୁ ତା ଦେହ, ମନର ବଳ ।
ଶକତ ହେଉ ସତେ କି ଲୁହା
ପାଲଟି ଯାଉ ବୀରର ଛୁଆ ।



ମାଟିର, କାଠର ଯେତେ କଣ୍ଢେଇ
ଝିଅ ଦେଇଅଛୁ ଘର ସଜେଇ ।
କାଚ କଣ୍ଢେଇକ ପାଏ ସେ ଭଲ
କାଳେ ଭାଙ୍ଗି ଯିବ ! ସେ ଲାଗି ଡର ।
ଦେଖୁଥାଏ ପିନା-ଆଖି ପୁଟେଇ
ଏଠି ସେଠି ତାକୁ ପକାଏ ନାହିଁ ।
ପାଠ ପଢ଼ା ପଢ଼ି ନଥିବା ବେଳେ
କଣ୍ଢେଇ ସବୁଙ୍କୁ ଧରି ସେ ଖେଳେ ।



ଦଶ, ବାର ସତର
କୁନ୍ ମୁନ୍ ଚୁଡ଼ା ନାହିଁ
ଗଛ, ଲତା ପତର ।
କୁନି କୁନି ଥାଳିଆ
ଏଠି ସେଠି ପକାନାହିଁ
ଏଣୁ ତେଣୁ ଅଳିଆ ।
ଶୀତ ବାଆ ବହିଲା ।
ବହି, ଖାତା, ପ୍ୟାଣ୍ଟ ଜାମା
କରନାହିଁ ମଇଳା ।
ନାଲି ନାଲି ପଥର ।
ଖେଳ ସାଥି ସାଇତ ଦେ'
ଖେଳନାକୁ ଏଥର ।
ସୁନା ଝିଅ, ପୁଅଟି ।
ଖାଇବା ଆଗରୁ ଧୁଅ
ହାତ ଆଉ ମୁହଁଟି ।
ଝରଯାଏ ଝରଣା ।
ଭୁତ-ଫୁତ ମିଛ କଥା
ଜମା କେହି ଡରନା ।



ଝିକ ଝିଅଟିଏ ହେଉ ପଛେ 'ବୁଲୁ'
ତା' ପରି ହେବ କିଏ ?

ଟିକି ଚାଲଟିରେ ପାଣି ଟୋପେ ଦେଇ
ବଗିଚ୍ଚରେ ଫିଏ ଦିଏ ।
କୁଲୁଠାରୁ ବଡ଼ ଭାଇଟି ତାହାର
କେଉଁଥିକୁ ନୁହେଁ ଊଣା ।
ମଞ୍ଜି ଲଗାଠାରୁ, ପାଣ ଦଶ୍ଚପାଏ
ସବୁ କାମ ତାକୁ ଜଣା ।
ମାଆ କହନ୍ତି ଏ ଗଛ ସବୁ ଲାଗି
ଖାଦ୍ୟ-କନ୍ଦା ଆମେ ପାଉ ।
ପାଣି, ପବନ ସ୍ନେ ଯୋଗାଏ ଅମକୁ
ଆମେ ସୁଖେ ରହିଥାଉ ।
ସବୁ ଫୁଲ ଫଳ ପଣବାକୁ ଗଛ
ଦିଏ ଦିନା ଆମ ପାଇଁ ।
ମନେରଖ ପିଲେ ଟିକି ଗଛ ସବୁ
କେବେ ଉପାଡ଼ିବ ନାହିଁ ।
ସବୁ ବରଷ ଆମ ଘୁଅର
ଜନମ ଦିନ ହୁଏ ।
ସେଦିନ ସିଏ ମାଅଙ୍କୁ ତା'ର
ହସି ହସିକା କୁହେ ।
"ଆଜି ମୁହିଁ ଗୁଣ୍ଡି ଗଛଟେ
ଲଗେଇ ଦେବି ଯେବେ ।
ବଡ଼ ଦିନକୁ ବହୁତ ଫଳ
ଦେବ ସେ ମୋତେ ତେବେ ।

□

କୁଲୁ କହିଲା ଶୁଣ ।
ଶ୍ରାବଣ ମାସେ ପଡ଼ିବ ପଣି
ମୋ' ଜନମ ଦିନ ।
ଭାଇଠୁ ଦେଖି ମୁଁ ବି ଗୋଟେ
ଲଗେଇ ଦେବି ଗଛ ।
ଗଛର କଥା ଅଗେ ବୁଝିବି
ସବୁକୁ ରଖି ପଛ ।

